# ସଚ୍ଚିଦାନନ୍ଦ ରାଉତରାୟ

# ପୃଥ୍ବୀ

ରାଧାମୋହନ ପୁସ୍ତକାଳୟ

# ହସନ୍ତ

ସଚ୍ଚିଦାନନ୍ଦ ରାଉତରାୟ

ପ୍ର ଥ ମ ସଂ ସ୍କ ର ଣ

୧୯୪୦

ମୂଲ୍ୟ ଠ ୧ ୯ ଏକଟଙ୍କା ମାତ୍ର

# ଭୂମିକା

'ହସନ୍ତ'ର ଖଣ୍ଡକବିତାଗୁଡ଼ିକ ଲଘୁ ରଙ୍ଗରେ ଲେଖା ଓ ଅବସର ବିନୋଦନ ପାଇଁ ରଚିତ । ଦଶ ବର୍ଷ ପୂର୍ବେ ଏ ବହିର ପ୍ରଥମ ପାଞ୍ଚଟି କବିତା ଯଥା 'ଗୋପବନ୍ଧୁଙ୍କ ଶ୍ରାଦ୍ଧ', 'ଦେବଲୋକରେ ଘୋଡ଼ଦୌଡ଼', 'ବିରହ କଳ୍କି', 'ହନୁମାନର ଗୋନ୍ଦ' ଓ 'ତିନିଶ ବର୍ଷ ତଳେ' "ହସରଙ୍କ" ପତ୍ରିକାରେ ପ୍ରକାଶ ପାଇଥିଲା । ଏଥିରୁ ଶେଷ ତିନୋଟି କବିତା ସମ୍ପୂର୍ଣ୍ଣରୂପେ ପୁନର୍ଲିଖିତ ହୋଇ ଏ ସଂକଳନରେ ସନ୍ନିବିଷ୍ଟ ହେଲା । କବିତାଗୁଡ଼ିକ ହାସ୍ୟରସପୂର୍ଣ୍ଣ, ଲୁଚିତ ଖୋରାକ । ଏ କବିତାଗୁଡ଼ିକ ବ୍ୟଙ୍ଗ-ରସାତ୍ମକ ହେଲେ ମଧ୍ୟ ସମାଜବୋଧରେ ତୀକ୍ଷ୍ଣ । ଯାହାକି କ୍ୟାରିକେଚର ଓ କାର୍ଟୁନ ମଧ୍ୟରେ ସମାଜବୋଧ ନେଇ ଯେଉଁ ମୌଳ ପ୍ରଭେଦ ଦେଖାଯାଏ, ସେଇ ଦୃଷ୍ଟିରୁ ଏ କବିତାଗୁଡ଼ିକୁ କାର୍ଟୁନ ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇ କୁହାଯାଇ ପାରେ ଖଣ୍ଡ ଖଣ୍ଡ ଲେଖା-ଚିତ୍ର ହିସାବରେ । ଆଧୁନିକ ସମାଜଦେଶ ଓ ସମାଜର ନାନା ଶକ୍ତିର ସଂଘର୍ଷ ଓ ଅଭିମୁଖ୍ୟର ମୂର୍ଚ୍ଛନ ଏ କବିତାରେ କେତେଦୂର ଫୁଟି ଉଠିଛି, ତାହା ପାଠକେ ବିଚାର କରିବେ ।

କୌଣସି ବ୍ୟକ୍ତିବିଶେଷ ବା ଅନୁଷ୍ଠାନକୁ ତାଙ୍କ ବା ଲୋକଚକ୍ଷୁରେ ହେୟ ପ୍ରତିପାଦନ କରିବା ଜମା ଲେଖକର ଉଦ୍ଦେଶ୍ୟ ନୁହେ । ଯେଉଁସବୁ ମନୋଭାବ ଓ ଅଭିମୁଖ୍ୟ ବର୍ତ୍ତମାନ ଦେଶରେ ଦେଖା ଦେଇଛି—ଆଉ ଯେଉଁଥିରୁ ଲେଖକ ନିଜେ ମଧ୍ୟ ମୁକ୍ତ ନୁହେଁ, ସେଇ ସବୁକୁ ଉପଜୀବ୍ୟ କରି ଏ-କବିତା-ଗୁଡ଼ିକ ରଚିତ । ଆତ୍ମସମାଲୋଚନା ବା ଆତ୍ମ-ନିରୀକ୍ଷା ଉନ୍ନତିର ପ୍ରଥମ ସୋପାନ ବୋଲି ପଣ୍ଡିତମାନଙ୍କ ମତ । କବିତାଗୁଡ଼ିକ ଆପାତତଃ ଅନ୍ୟର ସମାଲୋଚନା ପରି ଜଣାଯାଉଥିଲେ ମଧ୍ୟ ମୁଖ୍ୟତଃ ଆତ୍ମସମାଲୋଚନା । ଏ ସମାଲୋଚନା ସମାଜର

ଆଜି ପାଠକଙ୍କ ପ୍ରତି ଯେତିକି ପ୍ରଯୁଜ୍ୟ, ଲେଖକ ପ୍ରତି ମଧ୍ୟ ସେତିକି ପ୍ରଯୁଜ୍ୟ । ଏଥିରେ କୌଣସି ବ୍ୟକ୍ତିବିଶେଷ ଦଳ ବା ଗୋଷ୍ଠୀ କ୍ଷୁନ୍ନ ହେଲେ ଲେଖକର ମୌଳ ଉଦ୍ଦେଶ୍ୟର ପରାଜୟ ଅନିବାର୍ଯ୍ୟ । କବିତାଗୁଡ଼ିକରେ ଉଚ୍ଚ ଆଦର୍ଶବାଦର ମୂର୍ତ୍ତି ନ ଥାଇ ପାରେ, କିନ୍ତୁ ସତ୍ୟ ଓ ଅଭିଜ୍ଞତାର ଉଚ୍ଚାରଣ ଯେ ଏହା ନିଶ୍ଚୟ, ଏଥିରେ ସନ୍ଦେହ ନାହିଁ ।

ହସିବା, ବିଶେଷତଃ ନିଜକୁ ନେଇ ମନ ଖୋଲି ଖୁବ୍ ଜୋରରେ ହସିବା ପୂର୍ଣ୍ଣତାର ପରିଚୟ । ଆମ ଦେଶରେ ନାନା ଅଭାବ, ଦୈନ୍ୟ, ଜଡ଼ତା ଓ କ୍ଳାନ୍ତି ଭିତରେ ହସର ଝରଣା ଯେମିତି ଦିନ ଦିନ ଶୁଖିଯାଉଛି । ସାମାଜିକ ହସର ସବୁଠାରୁ ବଡ଼ ଶତ୍ରୁ ସମାଜର ରକ୍ଷିତ ସ୍ୱାର୍ଥ ଓ ଉପରେ ଥାଇ ଥିବା ବଡ଼ବଡ଼ିଆଙ୍କର ଭ୍ରୂକୁଞ୍ଚନ । ତେଣୁ ଏ ସବୁ ଅବରୋଧ ସତ୍ତ୍ୱେ ଯଦି ହସର ଆବିର୍ଭାବ ହେଲା—ତେବେ ତାହାକୁ ଏକପ୍ରକାର ବିପ୍ଳବ କହିଲେ ଅତ୍ୟୁକ୍ତି ହେବ ନାହିଁ । ହସ ସ୍ୱାସ୍ଥ୍ୟ ଓ ଜୀବନର ସଙ୍କେତ । ସମାଲୋଚନା ଆତ୍ମପ୍ରସ୍ତୁତି ଓ ଭବିଷ୍ୟତ ସଂଗଠନର ଭୂମିକା । ପଛରେ କୁତ୍ସାରଟନା ବା କାନରେ ଫିସ୍‌ଫିସ୍ କରିବା ଅପେକ୍ଷା ଖୋଲା ଉଦାର ଭାବରେ ପ୍ରକାଶ୍ୟ ସମାଲୋଚନା କରିବା ବେଶୀ ସ୍ୱାସ୍ଥ୍ୟକର ଓ ହିତକର । ଏହାହିଁ ଗଣତନ୍ତ୍ରର ଭିତ୍ତି ।

ଆମର ଆଶା, ଓଡ଼ିଶାର ପାଠକପାଠିକା ଏ କବିତା-ଗୁଡ଼ିକରେ ରୁଚିର ଖୋରାକ ପାଇବେ ଆଉ ନିଛକ, ନିର୍ଦ୍ଦୋଷ, କୌତୁକକଥା ଛଡ଼ା ଅନ୍ୟ କିଛି ମତଲବ ଲେଖକଠାରେ ଆରୋପ କରିବେ ନାହିଁ ।

୯, ଗାର୍ଡେନରିଚ୍ ରୋଡ଼
କଲିକତା—୨୪

ସଚ୍ଚିଦାନନ୍ଦ ରାଉତରାୟ
ତା ୮-୫-୪୯

ମୋର ବନ୍ଧୁ ଓ ଅନ୍ୟ ଦିଗରୁ ମଧୁର-ସମ୍ପର୍କିତ
( ସ୍ତ୍ରୀଙ୍କ ପିଉସୀପୁଅ ଭାଇ ) ପିଠାପୁରମ ମହାରାଜାକୁମାର

**ଅମ୍ମକୁ—**

ଯାର ସ୍ଥୂଳ କଂଠର ଘରଘଣ୍ଟା ଟୋ ଟୋ ସଂକାମକ **ହସ**

ଜୀବନର ସବୁ ଜଟିଳତା, ସବୁ ସଂଗ୍ରାମ, ସବୁ

ତିକ୍ତତା **ଆଉ** ସବୁ ପ୍ରକାର ବାଦ ବିବାଦ

ପୁଣି ରାଜନୀତି ଅତଳସ୍ପ କରୁ ସୁଦୂର

ଯାତ୍ରାସବୁ **ଆସି** ମୋ'କାନରେ

ବେଳେ ବେଳେ

ବାଜେ—

‘ସତି’

ତା ୨୨ । ୨ । ୧୯୫୦

କଲିକତା

# ସୂଚୀ

କବିତାର ନାମ — ପୃଷ୍ଠା



---

"**ଭ୍ରମ ସଂଶୋଧନ** :—'ହନୁମାନର ଗୋହ' କବିତାରେ ୨୨ ପୃଷ୍ଠା ୧୫ ଧାଡ଼ିରେ 'ଓଡ଼ିଆ' ସ୍ଥାନରେ 'ଓଡ଼ିଆ' ରହିଥିବା ହୋଇଥାଉ ।..............."

## ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ପ୍ରଣୀତ
## ଅନ୍ୟାନ୍ୟ ପୁସ୍ତକାବଳୀ

୧। ଧୂଳି ( ଗଳ୍ପ ସଂଗ୍ରହ ) ଟ ୧।
୨। ଅଭିଯାନ ( କବିତା ସଂଗ୍ରହ ) ଟ ୦ ୷୲
୩। ପାଣ୍ଡୁଲିପି ( କବିତା ସଂଗ୍ରହ ) ଟ ୨୲
୪। ମଶାଣିର ଫୁଲ ( ଗଳ୍ପ ସଂଗ୍ରହ ) ଦ୍ୱିତୀୟ ସଂସ୍କରଣ ଟ ୧୲
୫। ମାଟିର ତାଜ ( ଗଳ୍ପ ସଂଗ୍ରହ ) ଟ ୧୲
୬। ପଲ୍ଲୀଶ୍ରୀ ( କବିତା ସଂଗ୍ରହ ) ଦ୍ୱିତୀୟ ସଂସ୍କରଣ ଟ ୦ ୷୲
୭। ବାଜି ରାଉତ ( କବିତା ) ତୃତୀୟ ସଂସ୍କରଣ ଟ ୦ ୷
୮। ଭାନୁମତୀର ଦେଶ ( ଗଦ୍ୟ-କବିତା ) ଟ ୦ ୷୲
୯। କବି ହରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ କୃତ "ବାଜି ରାଉତ"ର ଇଂରାଜୀ ତର୍ଜମା
The Boatman Boy & Other poems Rs. 1-8-0
୧୦। ପାଥେୟ ( କବିତା ) ଟ ୦ ।୲
୧୧। ପୂର୍ଣ୍ଣିମା ( ଗୀତିନାଟ୍ୟ ) ଟ ୦ ।୲
୧୨। ଚିତ୍ରଗ୍ରୀବ ( ଉପନ୍ୟାସ ) ଟ ୧୲
୧୩। ଅଭିଯାନ ( କବିତା ) ୨ୟ ସଂସ୍କରଣ ଟ ୦ ୷
୧୪। ହସନ୍ତ ( ବ୍ୟଙ୍ଗ କବିତାଗୁଚ୍ଛ ) ଟ ୧୲

# ହସନ୍ତୁ

ଗୋପବଂଧୁଙ୍କ ଶ୍ରାଦ୍ଧ

( ରାଗ—ବସନ୍ତ ଶୁଲ୍କ )

—ସଭାପୂର୍ବର ନୋଟିସ୍—

**ବିରାଟ ସଭା !** **ବିରାଟ ସଭା !**

ସ୍ଥାନ—କଟକ ଟାଉନ ହଲ୍

ସମୟ—ସାଢ଼େ ୬ଟା ।

ସଭାପତି—**ଶ୍ରୀ ହର୍ଷବର୍ଦ୍ଧନ ସମର୍ଦ୍ଦାର**

ବିଷୟ—ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁଙ୍କ

ସ୍ମୃତି—ଶ୍ରାଦ୍ଧ—ତର୍ପଣ ଇତ୍ୟାଦି

ବି: ଦ୍ର:—ଉକ୍ତ ସଭାରେ ପ୍ରଧାନ ବକ୍ତା ଡାକ୍ତର ହୃଦ୍‌ବନ୍ଧୁ ସାମଲ ଓ ବର୍ମା ଅଏଲ୍ କୋଂର ଜନପ୍ରିୟ ବିଖ୍ୟାତ ଏଜେଣ୍ଟ ଶ୍ରୀ ଶୈଳେନ୍ଦ୍ରଚନ୍ଦ୍ର ରୂପଟସ୍ୱାମୀ ଦୁଇଟି ଜ୍ୱାଳାମୟୀ ଓ ଭୀଷଣ ଆବେଗପୂର୍ଣ୍ଣ ଭାଷଣ ଦେବେ ।

ସର୍ବସାଧାରଣଙ୍କ ଉପସ୍ଥିତି ପ୍ରାର୍ଥନୀୟ ।

୨ଟା ନ ବାଜୁ
          ଅପେକ୍ଷୁ କେତେ ଭକ୍ତସଂଗାଢ଼
ଅଇଲେ ନେତା,
          ସମାଜଚଣ୍ଡେ, ମୁହଁରୁ ଧୂଆଁ
କେତେ ଯେ ନେତ୍ରୀ
          ସମୟ ଜାଣି ହୋଇଲେ ଆସି ରୁଣ୍ଡ
ଗଣିବ କିଏ
          ଢେରଣ ହବ ଦର୍ଶକଙ୍କ ମୁଣ୍ଡ ।
ଜଆର୍ ଦେଖି
          ସମ୍ପାଦକ କହିଲେ ମୁହଁଠାରୁ,
"ହୁଡ଼ମ୍ବ ବାବୁ
          କହନ୍ତୁ କିଛି"; ବାଜିଲା କରତାଳି ।
ମୃଦୁକ ହସି
          ଡାଃ ହୁଡ଼ମ୍ବ ହୋଇଲେ ବେଗେ ଠିଆ,
ମୁହଁରୁ କାଢ଼ି
          ହାତିଆ ପିକା, ନଖ୍ରଇ ଦେଲେ ନାଆଁ ।
କହିଲେ ପ୍ରିୟ
          ସଭ୍ୟ ବୃନ୍ଦ, ବୃଦ୍ଧ ସମ୍ପାଦକ—
"ଗୋପବନ୍ଧୁ ଥିଲେ
          ଓଡ଼ିଶା ବଣେ ଗୋଟିଏ ବୋଲି ହାତୀ ।
ନ ଥିଲା ପିନା
          ମୁହଁରେ ତାଙ୍କ ସୁରହାତିଆ ଶୁଣ୍ଢ
ସେମାନେ ତ
          ସହଜ ଥିଲେ, ଶୁଣିଲେ ତାଙ୍କ ତୁଣ୍ଡ ।

କନ୍ତୁ ବିଧାତା
ହୋଇଲେ ସିନା ଓଡ଼ିଶା ପ୍ରତି ବାମ,
ମରଣ ହେଲ୍ଲ,
ମାନଙ୍କ ନାଇ ଗୋବର-ଗୋଡ଼ା ଯମ ।
(ହୁଅର, ହୁଅର୍, ପାଟେଥିଟିଲ୍…)
(କଛି ସମୟ ପରେ ଲମ୍ଫ ପୋଛି )
ଭାଷ ଭାବ ଭାଇ
କାରଣ ତାର, ଖବର ମୁହିଁ ଠିକ୍
ମାଲେରିଅହିଁ
ଗୋପବାବୁଙ୍କୁ ମାରଣ;—ତାକୁ ଧିକ୍ ।
ମାଲେରିଆରେ
ମଲେଣ୍ଟି ଯହିଁ ଓଡ଼ିଆ ଭାଇ ନିତି
ସେଇ ଦୁଃଖେ
ଗୋପବାବୁଙ୍କ ହୋଇଲା ସିନା ଗତି ।
∴ ଭାଇ (୧)
ନସ୍ୟରଞ୍ଜିଙ୍କ ଧାରା ଅନୁସାରେ
ମାଲେରିଅହିଁ.
ଗୋପବାବୁଙ୍କୁ ନେଇଣ ଯମପୁରେ ।
(ହୁଅର, ହୁଅର, ବଜିଫୁଲ୍ ଧ୍ୱନି)
ଅତଏବ ଯଦି
ମାଲେରିଆଟା ନ ଥାନ୍ତା ଏଇ ଦେଶେ
ଗୋପବାବୁ କି
ଆମକୁ ଛାଡ଼ି ପଳାଇଥାନ୍ତେ ଶେଷେ !

(୧) ∴ ଏ ଶବ୍ଦର ଉଚ୍ଚାରଣ "ଅତଏବ" ପଢ଼ାଯିବ ।

ଅତଏବ ମୁଁ
ସମସ୍ତଙ୍କୁ କରୁଛି ଅନୁରୋଧ—
ଆଜଠାରୁ ତୁମେ
କଥାଗୁଡ଼ା ମୋ ମନରେ କର ବୋଧ ।
କୁଇନାଇନ୍ ଖାଅ !
କୁଇନାଇନ୍ ଖାଅ, ପଳାଇଯିବ ଜ୍ୱର,
ଶସ୍ତା ଖୁବ୍,
ଡବାଟୋଠାକୁ ପଇସା ଅଣା ବାର ।
ବଡ଼ବଜାର
ଛକ ଉପରେ ଲୋକଙ୍କ ହିତ ପାଇଁ
ଖୋଲିଛି ମୁଁ ଯେ
ଦୋକାନ ଏକ ଭାବନା ଆଉ ନାଇ ।
ନାମ ତାହାର
"ଶ୍ରୀ ଗୋପବନ୍ଧୁ ଦରିଦ୍ର ସେବାଗାର"
କହିବ ନାଇ
ଆଉ ମୁଁ କିଛି, ଗୁଡ୍‌ବାଇ, ଭାଇ ମୋର !"
ଏତିକ କହି
ଡାକ୍ତର ଯହୁଁ ବସିଲେ ସ୍ଥାନ ମାଡ଼ି
ଏଜେଣ୍ଟ ବାବୁ
ଉଠିଲେ ତହୁଁ, ଚଷ୍ମାଟା ଝାଡ଼ି ।
ଚସମାଟାକୁ
ଖୋଲରେ ରଖି କହିଲେ—"ସଭ୍ୟମାନେ—
ପୂର୍ବବର୍ତ୍ତୀ
ବକ୍ତା ମୋର କହିଲେ ଯାହା, ମାନେ— ( ) ।

କଥାଗୁଡ଼ାକ—
ତାଙ୍କର ଅଟେ ନିହାତ ପ୍ରାକ୍‌ଟିକାଲ୍‌,
ଭୁଲ୍‌ ନାଇ
ଯଦେ ହେଲେ, ନିହାତ ଲଜିକାଲ୍‌ ।
ଯଦେ ମୁଁ ଖାଲି କହିବି ଭାଇ,
କହିବ ଭୁଲ୍‌ ମାପ ।
କୁଇନାଇନ ନୁହଁ
ମାଲେରିଆର ଏକମାତ୍ର ବାପ୍‌ ।
ମାଲେରିଆର
କାରଣ ଭାଇ ଅଛ ତ ସବୁ ଜାଣି,
ମଶା, ମାଛି
ଡାଉଁଶ ପୁଣି ମଇଳା ପଙ୍କ ପାଣି ।
ସବୁଠୁ ଭଲ
ଦୁଇ ବୋତଲ କିରାସିନ୍‌ କିଣି,
ଢାଳି ଦବା ଠା
ପାଣି ଉପରେ, ମଶଙ୍କ ଉମ୍ବ ହାଣି ।
ତାହାହେଲେ ତ
ଡାଉଁଶ ମଶା କ୍ଷଣକେ ଯିବେ ମରି,
ମାଲେରିଆ ଠା
ପଳାଇ ଯିବ ଓଡ଼ିଶା ଦେଶୁ ଥରି ।
ହିଁ, ଆହୁରି ପୁଣି
କହିବାକୁ ଭୁଲି ଯାଇଚି ମୁଁ ଯେ ଭଲ—
ସବୁଠୁ ଭଲ
ବର୍ମା ଦେଶ କିରାସିନଟି ଖାଲି ।

କଷ୍ଟସିମା ଯଦ କଂଟ୍ରୋଲ୍‌ରେ
ନ ମିଳେ ଦୁଇ ଟିଣ,
ଓ.ଓ.ଟି ଅଛୁ, ନର୍ଦ୍ଦମାରେ
ସେଥିରୁ କଷ୍ଟ କଣ ।
ଏଜେଣ୍ଟ ତାର—ଗଜଡ଼ ସାହୁ
ମହିରେ ମୋର ଘର
ଦାମ୍ ଭାଇ ଶସ୍ତା ଅଛ,
ଟିଣଙ୍କ ଠଙ୍କା ଚାର ।”

(ହୃଅର୍, ହୃଅର୍, ମାର୍କ, ମାର୍କ)

ଘର କଂପିଲା
କରତାଳରେ ହଲ୍‌ଗଲା ପୂର
“କଅବାଛ” ନାଦେ
ରସ୍ତା ବାଟ ଉଠିଲା ଗାଲି ଥର ।
ତା ପରେ ଧୀରେ
ଆସନ ଛାଡ଼ ଉଠିଲେ ସଭାପତ
କହିଲେ—“ଆଜ
ସମୟ ନାଇ, କହିବାକୁ ମୋ ଅଛ ।
ଏ କ୍ଷେତ୍ରରେ
ଭାଷଣ ଗାଲ୍ ଦେବ ମୁଁ ଦୁଇ ପଦ,
ବକ୍ତାମାନେ
କହିଲେ ଯାହା ନୁହଇ କଛୁ ମନ୍ଦ
କଥାଗୁଡ଼ାକ
କପଟ ସତ, କଳସ ସବୁ ଖାସ୍,

ସାଗ ନଙ୍କେ
ନ ଦେଖି ମୂର୍ତ୍ତି, କହୁନ କଛୁ ପଦ୍ୟ !
ତୁଅନ୍ତା ଭଲ,
ବକ୍ତାମାନେ ଦୟା କର ମୋର—
ଘଟାଇ ଦ୍ୟନ୍ତେ
ଘରକୁ ଯଦ ଭକ୍ତି-ଉପହାର
ଭୁଇ ଡଜନ
କୁଇନାଇନ୍, କବ୍‌ସିନକୁ ଟିଶେ,
ଫମ୍ପାଷା କର
ମତଟି ମୋର ଜଣାନ୍ତି ଧୀର ସଣେ ।
(ନେପଥ୍ୟେ ଜଗାରବ୍ଧୋ, ଜଗାରବ୍ଧୋ ଧ୍ୱନ)
ଫଗେ ଫଗେ
ଗୃହ ଦଗରୁ ଉଠିଲା କୋଳାହଳ,
"ଜୟ ଗୋପବନ୍ଧୁ"
ସବୁର ତୁଣ୍ଡୁ ଉଠିଲା ଅଛସ୍ରୋଳ ।
ଭୟ ନାଇ ହେ ଗୋପବନ୍ଧୁ !
ମରବ ନାଇ ଆଜ ।
ଭାଙ୍ଗିଲା ସଭା,
ସରଳ କଥା, ଏତକ ଅଛି ଥାଉ । *

---

* ପ୍ରଥମେ ଶ୍ରାଦ୍ଧପର୍ବ ନାମରେ, ୧୩୪୦, ଅଷାଢ଼ "ଉତ୍କଳ"ରେ ପ୍ରକାଶିତ ।

# ଦେବଲୋକରେ ଘୋଡ଼ା ଦୌଡ଼

ଏକଦା ଦିନେ ସ୍ୱର୍ଗଲୋକେ
ପଡ଼ିଲା ଭାରି ବାଜି
କିଏ ସେ ଆଗ ଆସିବ ବୁଲି
ତିନି ଭୁବନ ଆଜି ।

ବୁଢ଼ା ନାରଦ, ନାଇଟି ରଦ,
କହିଲେ ମୁହଁ ଝାଡ଼ି—
ଆସିବ ଯିଏ ସ୍ୱର୍ଗ, ମର୍ତ୍ତ୍ୟ,
ପାତାଳ ଧାମ ମାଡ଼ି—

ଘଣ୍ଟା ଚାରି, ମିନଟ୍ ପାଁଚ
ମଧ୍ୟେ ଜାଣ ମୁହିଁ
ମେଡାଲ ଏକ ଦେବିର ତାକୁ,
କହୁଛି ଦାଢ଼ି ଛୁଇଁ ।

ନ ସରୁଁ କଥା, ବହୁତ ବୀରେ
ପଡ଼ିଲେ ଆଗେ ଡେଇଁ
କିଏ ସେ କହେ "ମୁଁ ଥାଉଁ ନବ
ପଦକ ପୁଣି କେହୁ ।"

ଅନ୍ୟ କହେ "କିଏ ବା ମୋର
ମହିମା ନାହିଁ ଜାଣି
ଏକାସ୍ପ୍ରିଟରେ ବାଣାସୁରଙ୍କୁ
ବେକରୁ ଦେଲି ହାଣି ।"

କିଏ ସେ କହେ ମୋ ଯୋଗୁ
ସବୁ ଲଭିଲେ "ହୋଲ୍ ଯୋଷ୍ଟ"

ଶ୍ରୀ ରାବଣ, ମୋ ତହୁଁ ବଡ଼
ଅଛୁ କି କେହୁ ଯୋଦ୍ଧା ?
କହଇ ଭୀମ—"କର୍ଣ୍ଣେଲ ହୁଡ
ହାତରେ ମୋର ମଲେ,
ମୋ ପରି ବୀର ଦେଖିବ ନାଇ
ଜୀବନ ଭମ ଗଲେ ।"
କହିଲା ହନୁ ମାରିଛି ମୁଁ ଯେ
ଅସୁର ଶତ ଭାଇ
ଖୋଦ୍ ଶ୍ରୀରାମ ଅଛନ୍ତି କରି
ମୋତେ ଯେ ସାର୍ଟିଫାଇ !"
କୁମ୍ଭକର୍ଣ୍ଣ ଦୂରରେ ସୁଂଖ
ଢୁଲାଉଥିଲା ବସି
ଚମକି ଆଖିପତାଟି ମଳି
କହିଲା ବଡ଼ ରୋଷି,
"ଗଧା ବାନର ଗର୍ବ ତୋର
ହବରେ ଅଙ୍ଗ ଜୁର,
ନିଃଶ୍ୱାସରେ ପଡ଼ିଲୁ ମୋର
ଉଡ଼ି ତୁ କୋଶେ ଦୂର ।
ଲଙ୍କା ନାଇ, ନିଲଠା ମୁଖେ
ଦଡ଼ାଇ ପୁଣି କରୁ
ବନ୍ୟ ପଶୁ, ଅସଭ୍ୟ ତୁ
ଯାହା ତୁ ନ ମରୁ ।"
ତାଙ୍କ କଥା ଶୁଣି ରାଗରେ ହନୁ
କ ଅବା ଆନ୍ତା କହୁ

ମାଙ୍କ କୁମ୍ଭ ସଡ଼କ ଭଅ—
ଭିତରେ ପୂର୍ଣ୍ଣ ଶୋଷ ।
ଘଗରେ ହନୁ ମ ସାଇ କନ୍ଥ
ଗୁଡ଼ିକ ଖାଲ୍ ନଶ
ଜକାକ ଦାହ୍ ଗୋଷ୍ଠାଙ୍କ ତାର
ଖାଇକ ସର ବଷ ।
ଏସର୍ କମେ ବଢ଼ିକ କଳ
ଶେଷରେ ହେଲ ସ୍ଥିର,
ବସ୍ତୁ ହେବେ ମଣ୍ଟିମଣ୍ଟିଆ (୧)
ମାରବେ ତୁଇସିଲ୍ ।
ଆରମ୍ଭ ହବ ସାଢ଼େ ଦଶଟା
ସମୟେ ଠିକ୍ ଖେଳ,
ସବୁ ଦେବତା ଦେଖିବା ପାଇଁ
ଷଣିଏ ହେଲେ ମେଳ ।
ଅଇଲେ ଯମ ମହିଷ ଚଢ଼ି,
ଇନ୍ଦ୍ର ଐରାବତ,
ତେତିଶ କୋଟି ଦାଅ ଦେବତା
ହେଲେ ଯେ ସମବେତ ।
ଋଷ୍ଣା ଓ୍ୱାର୍ ନରେଦ ବସ୍ତୁ
କହିଲେ ହସି ଧୀର—
ଏଗାର ମିଂଣ୍ଟ୍ ଅଛୁର ବାଙ୍କୀ
"ବ ରେଡ଼ି, ହୁସିଆର ।"

(୧) ମଣ୍ଟିମଣ୍ଟିଆ—ରେଫେରି

ମିସେସ୍ ବିଷ୍ଣୁ ନମ୍ବର ଓ୍ୱାନ
ଲକ୍ଷ୍ମୀ ଦେବୀ ନାମେ
ଘୋଡ଼ାଗୋ ପିଠି ହେଲେଣି ଜୟୀ
ବିଷ୍ଣୁଙ୍କର ବାମେ ।
ନମ୍ବର ଟୁ ସରସ୍ୱତୀ ସେ
ବ୍ୟସ୍ତ ପାଠାଗାରେ,
ଜଟିଳ ଏକ ବୀଜଗଣିତ
ମଥାଛି ତାଙ୍କ ପାରେ ।
ତେଣୁ ସେ ଅଙ୍କ ଆସିବେ ନାଇ
ପଠାଇଚନ୍ତି ତାର,
ଏ ଶୁଭୋଦ୍ୟମେ ଶୁଭ କାମନା
ଜଣାଇ ବାର ବାର ।
ଦେବଙ୍କ ମଧ୍ୟେ ପାଗଳା ହର
ନାହାନ୍ତି ହୋଇ ବଜେ
ପାଇଲେ ନାଇ ବୋଁଟଧ ଟ୍ରେନ,
ମଟୁଆ ବଡ଼ ନଜେ ।
ବ୍ରହ୍ମାଙ୍କର ଅଫିସ୍ କାମ
ବହୁତ ବାକୀ ଅଛି,
ତେଣୁ ସେ ଅଙ୍କ ଅଇଲେ ନାଇ
ଫାଇଲ୍ ମେଲେ ଲଚି ।
ବାକୀ ସବୁବେ ଗାଲେଇ ପରେ
ଅଛନ୍ତି ହୋଇ ଜୟୀ,
ଉପମା କସ ଦେବା ତାଙ୍କର
ଅତୁଳ ସେ ଯେ ଶୋଭା !

କ୍ଷଣକ ପରେ ହୋଇଲେ ଜମା
ସବୁ ଖେଳାଳୀମାନେ,
ସଭିଙ୍କ ହାତେ ସେ ଧନକର
ଖଣ୍ଡେ "ସ୍ପୋର୍ଟସ୍ ମ୍ୟାନ୍" ।
କାଗଜଠାର ସ୍ପୋର୍ଟସ୍ ସ୍ତମ୍ଭ
ପଙ୍କ୍ତି ହୋଇ ଚୁପ୍,
ଭାଙ୍ଗିଲା କିଏ ରେକର୍ଡ କାହିଁ
କିଏ ବା ନେଲା କପ୍ ?
ସମସ୍ତ ହେଲା,......ସକଳେ ଠିଆ
ହେଲେ ଧାଡ଼ିକ ଧାଡ଼ି,
ବାଜିଲା ବଂଶୀ, ବିକଟ ରବେ
ଛନିଅା ରଡ଼ି ଗାଡ଼ି ।
ହେ ଦଉଡ଼, ଝୁପ୍ ଝାପ୍
ତା'ପରେ ଚୁପଚୁପ,
ସର୍ବେ ନିଜ ବାହନ ଚଢ଼ି
ଗୁଲନ୍ତି ଧପ୍ ଧାପ୍ ।
କାର୍ତ୍ତିକେୟ ମୟୂର ଚଢ଼ି
ଚନ୍ଦ୍ର ଚଢ଼ି ଶଶା,
ଗଣେଶ ଧାଏଁ ବଗୁର୍ ଧୀରେ
ଚଢ଼ି ନିଜର ମୂଷା ।
ଦୀର୍ଘ ଶୁଣ୍ଢ ଘୁସୁଟର ତଳେ
ରକ୍ତ ଝରେ ଯେଣୁ
ଅଣ୍ଡାରେ ନିଜ ଶକ୍ତି ଭରି
ଦୋଉଛନ୍ତି ବାନ୍ଧ ତେଣୁ ।

ଚଢ଼ି ଯେ ହନୁ ଗୋଟାଏ ଘୋଡ଼ା
ଅଗରେ କୁଦା ମାରେ,
ନ ଗଲେ ଘୋଡ଼ା ଲାଙ୍ଗୁଡ଼େ ନିଜ
ଗୁଳ୍ପ କଷି ମାରେ ।
ବଗୁରୀ ଭୀମ ଧାଇଁଛ ଚଢ଼ି
ଗୋଟାଏ ସାଇକେଲ୍
ପୃଥୁଳ ବପୁ, ନ ସହେ ଭାରୀ,
ଭଙ୍ଗ ସେ ହରବର ।
ଟିକଏ ଯାଇଁ ବର୍ଷ୍ଟ୍ କଲା
ସାଇକେଲ୍‌ର ଟାୟାର,
ମାଇଲେ ତାଳ ଦେଖଣାହାରୀ
ଲାଜରେ ସରବର ।
କୁମ୍ଭକର୍ଣ୍ଣ ଗୋଟାଏ କାଉ
ଡେଣା ଉପରେ ବସି,
ଧାଇଁଛ ବେଗେ ଆକାଶ ପଥେ
ଛୁଟାଇ ପଣୀ କଷି ।
ମାଡ ଦେବେ ଥଣ୍ଡା ବାୟୁ
ଲାଗିଲା ଯହୁଁ ତାର,
ମାଡ଼ିଲା ଘୁମ, ଅଇଲା ନିଦ
ଆଖିଟା ହେଲା ଭାର ।
ପଡ଼ିଲା ଖସି ଆକାଶୁ ଶେଷେ
ଜଖମ ହେଲା ବେଳ
ହସିଲେ ସବୁ ଭୂଇଁରେ ଗଡ଼
ମଜାଟା ଥରେ ଦେଖ ।

କାର୍ତ୍ତିକେୟ ଛୁଟିଣ ଆଗେ
ତା'ପଛେ ଧାଏଁ ହନୁ
ସବୁର ପଛେ ଗଣେଶ ଚଲେ
ଝାଳରେ ଓଦା ତନୁ ।
ଘଣ୍ଟାକେ ଯାଏ ପାହୁଣ୍ଡ ଚର
ମନରେ ନାହି ଆଶା
ଅଚଳ ଫେର ନିରାଶା ହୋଇ
ମୁହଁରେ ନାହି ଭାଷା ।
ମଲିନ ମୁଖେ ବସ୍ତୁ ପଦେ
ପ୍ରଣମି ତିନଥର,
ଅଚଳ ବସ୍ତୁ ଗୋଇଠି ପାଖେ
ଘୂରି ସେ ତିନବାର ।
କାର୍ତ୍ତିକେୟ ଅହୁର ହନୁ
ଅଇଲେ ଦୁହେଁ ଫେରି
ତିନି ଭୁବନ ନିମିଷକରେ
ପବନ ବେଗେ ଘୂରି ।
ବଂଶ କୋଟି ଯୋଜନ ଦୂର
ବିଜୁଳି ପରି ଖଣେ
ଫେରିଲେ ଦୁହେଁ ବିଜୟ ଆଶା
ଧରି ବୁକୁର ତଳେ ।
କାର୍ତ୍ତିକେୟ ଝାଳରେ ଓଦା
ରୁମାଲେ ମୁହଁ ପୋଛେ,
ଗୋଟିଏ ଲୋମ ନାହି ହନୁର
ଝୁବୁକ ମାରି ପୁଛେ ।

ଦେବଗଣୋଲ୍ଲାସ ସକଳେ କଲେ
ଖୁସିରେ ଜୟ ଧ୍ୱନି
ବଜ୍ରସ୍ୱାନନେ ପବଣ ବେଗ
ଉତ୍ସୁକ ଉଠେ ପୁଣି ।
ଭାବଲେ ସର୍ବେ ପ୍ରଥମ ହେବ
ହନୁମାନଟା ଆଜ
ବିଜୟ ଟୀକା ପ୍ରାପ୍ୟ ତାର,
ମାର ତ ନେଲା ବାଜି ।
କାର୍ତ୍ତିକେୟ ଦୁଃଖେ ଶଙ୍କେ
ନୟନ ସଢ଼େ ଫିକା
କୁମାଷ୍ଟି ରଂଭା, ଉର୍ବଶୀ ତ
ସଭରେ ଗଲେ ଦେଖା—
ପ୍ରକାଶ୍ୟରେ ଉଠିଲେ କାଁଦ
ସବୁର ସାମନାରେ
ଦର୍ଶକଂକ ମୁରୁକି ହସା
ନ ମାନି ବାରେ ବାରେ ।
ଶେଷରେ ବୁଢ଼ା ନାରଦ ଋଷି
ହେଲେ ସଳଖ ଠିଆ
ମେଡେଲ ଧରି କହିଲେ "ପ୍ରିୟ
ଭଦ୍ରଗଣ ଶୁଣ ।
ଗଣେଶ ନବ ପଦକ ଆଜ
ଫେରନ୍ତି ସେ ଛ ଆଗେ
ବାପ୍ପ ପଦ ଧୂଳି ସେ, ଯହିଁ
ଜନ ଭୁବନ ସଙ୍ଗେ ।"

ବସ୍ତୁସ୍ତୁରେ ମୌନ ସଂବ
ବନୁର ମୁହଁ ଫିକା,
ଲଂକ ପିଠି ଭାବେ ନେସ ମନେ
ପାଇଲି ଆଚ୍ଛା ଶିକ୍ଷା ! !
ପାଇଲେ ଥରେ ସୁବିଧା ସବୁ
ଛଡ଼ାଇ ଦ୍ୟନ୍ତ ଢାର—
ଋଷି ପଣିଆ, ବୁଢ଼ା ନା ଦ,
ହୁଅନ୍ତା ହରବର ।
କାର୍ତ୍ତିକେୟ ମନରେ ଭାବେ
ହୋଇଲି ଅକାରଣ
ଏତେ ଦଉଡ଼ା, ଭୁବନ ବୁଲି,
ମିଛରେ ହଇରାଣ ।
ଫେରିଲେ ଘରେ, ଫେଉଲେ ହସି
ଗଣେଶ ମୂଷା ଚଢ଼ି
ଥୋଡ଼ପାହାଡ଼େ ପଦକ ଧରି
ଫେଙ୍କିଲେ ନଡ଼ ବଡ଼ ।
ଭାଙ୍ଗିଲା ଭିଡ଼, ଯେ ଯହିଁ ଗଲେ,
ହୋଇଲା ଯହୁଁ ବେଳ,
ଦେବ ଲୋକରେ ହେଲା ଯେ ଶେଷ
ଘୋଡ଼ା ଦଉଡ଼ ଖେଳ ।

---

"ନେପଚଙ୍କ" ୧୩୪୯—ପୌଷ ସଂଖ୍ୟାରେ ପ୍ରକାଶିତ ।

# ବିରହ କଳିକା

ଯେବେ ହେଉଥିଲା ଭାରି ବରଷା    ସେ ଭାରି ବରଷା
ସହଚରେ ଧାଇଁ ମୁଁ କନ୍ଦରେ ଧାଇଁଛି    ପେଟଦେଲି ସଂଧା ।
ଘରେ ପଶୁ ପଶୁ ବିରହ ବେଦନା    ଅଇଲା ଧାଡ଼ି,
ଚକଆଟାକୁ ମୁଁ ଯାକ ଧୂଳିଠାରେ    ଗଡ଼ିଲି ଲୋଟି ।
ଏ ଘନକାଳରେ ହୃଦ ଅନ୍ତଦେଶରେ    ଅତୀତ କଥା,
ଗୋଟି ଗୋଟି ହୋଇ ମନେ ପଡ଼ି ମୋର ଦାରିଲା ମଥା ।
"ପ୍ରିୟା କାହିଁ ପ୍ରିୟା" ପ୍ରାଣ ବାକଳରେ    ଛାଡ଼ିଲି ଡାକ
ପ୍ରାଣ ଗଲା ପ୍ରାଣ, କାହିଁ ସେ ମୁହିଁଟି    ପୀୟୂଷମଖା ?
ରାଗ, ରୁଷା, କଳି, ଆମ୍ବୁଡ଼ା, କାମୁଡ଼ା    ଚେଚେଇ କଥା
ସବୁ ମନେ ପଡ଼ି ବଢ଼ିଲା ମରମ    ବିରହ ବ୍ୟଥା ।
ହାତ ଯୋଡ଼ି ମୁହିଁ ବରଷାକୁ ଚାହିଁ    କହିଲି—"ଘନ !
ଆଜ ନ ବରଷ ଘନ ବାରିରସ    ମିନତି ଘେନ
ଜୀବନ ଅଜାଡ଼ି ଜୀବନକୁ ମୋର    ନ କର ପାନ
ଚାଲୁତ ମୋର ତୁ ଶୂନ୍ୟରେ ବାରିଦ    ଯିବଟି ପ୍ରାଣ ।"
ମାନେ ମୋ କଥା ନ ଗଲା ତା କାନେ    ଝରିଲା ଧାର
ବାଢ଼ ଅମ୍ବରଗଜ ମଥାନ ଥରାଇ;    ଉଜ୍ଜଳ-କାଳି—
ଉଆଁସ ତମିରେ ଚମକ ବିଜୁଳି    ଦେଖାଇ ଗଲା
ସବୁ ଅଛି, ଖାଲି ନାଇ ସେ ଜଣକ    ପ୍ରେମ-ପହିଁରା *

ଶୁଣିଲି ପେଷିବ ମେଘଦୂତେ ରାଇ    ସେ ଦୂର ଦେଶେ
ଦେଖାଯିବ ମୋର ପ୍ରିୟା କତି ମୋର    ବୁକୁ ଫନ୍ଦାଣେ ।

---

* ପହିଁରା—ଛଅଣି

ଛୁଇଁ ସିନ୍ଦୁବଣ, ବାରମାସି ବୁଦା    ଯିବ ସେ ଧାଇଁ
କୋଠିଲ୍ଲ କୋରଟେକ ଘଷି ମାଲ ତନୁ    ଯିବ ପଳାଇ ।
ତେଇଁ କଣ୍ଟକର ଛତ୍ରବଜାର    ଗୋଦାମ ଘର
ବାଳିକା କଲେଜ ବୋଡ଼ିଂ ଶିରେ    ବୁଲୁଇ ହାତ ।
ଖଣ୍ଡେ ଛଇଳାରେ ଚମକାଇ ବାଟେ    ଶୀକର ବାଟେ
ସ୍ୱେଦ ଜଳକଣା ଧୀରେ ପୋଛୁ ଦବ    ଆହା କେମନ୍ତେ !
ବଜଳା ଗୁବୁଟେକ ଦୁଇଶ ଅଣ୍ଟିଏ    ଲ୍ୱେଉକ ମାରେ
ଦର୍ପଣ ସାର ଶୁଣ ଖଲାହଳ !    ଯିବୁ ତୁ ଧୀରେ ।
ବଡ଼ ସାହେବଙ୍କ ଅଫିସ ଉପରେ    କୁଳଣ ହାଣି
ମଞ୍ଜୁର କଅଁ କଲେନି ମୋ ଛୁଟି    ତା ରେଡାବମା
ଦେଇ ଦେଇ ସେଠୁ ବଦା ହୋଇଯିବୁ;    ତାହାଣେ ଯିବୁ
ସାବଧାନେ ଯିବୁ ପାଦ ଗଣି ଗଣି    ଝୁଣ୍ଟି ପଡ଼ିବୁ ।

ମାହ କି ହେବ ଯେତେ ମୁଁ ଡାକିଲି    ଶୁଣିଲ୍ଲ ନାହିଁ
ବଧିର ସେ ଘନ ଅଧୀର ମୋ ମନ    ବାନ୍ଧିଥା କାନ୍ଧୁ
ବୁଝନ୍ତା ସେ ଅବା ବିଫଳ ସାଧନା    ଭାଙ୍ଗିଲ୍ଲ ଆଶା
ଜଡ଼ ଏ ଜଳଦ କିପରି ଜାଣନ୍ତା    ମଣିଷ ଭାଷା ?
ତହୁଁ ସ୍ଥିର କଲି କଅଁ ଏଠି ମରି    ଘର ତ କଥା
ଟଙ୍କା ପଇସା ଖର୍ଚ୍ଚ କଲେ ତ    ପ୍ରାଣର ବ୍ୟଥା
ଗୁଲିଯିବ ଡାକେ, ରହ, ରହ ଆଣେ    କାର୍ଡ ଗୋଟେ
ଷଣ୍ଢଅଁ ସହଅଁ ଯିବ ପାଣ୍ଡୁଦନ    ଏଇ ତ ମୋଟେ !
ତା ପରେ ଭାବିଲି ଜାଇଲେ ଜାଇଲି    ଥିଲେ ତ ବଣ !
କେଜାଣି କି ହବ ଜାଣେ ତା ଦଇବ    ଏଠେ କି ଅଛୁ ?
ବହୁ ଭାବ ଚନ୍ତ୍ର ଶେଷେ ସ୍ଥିର ହେଲି    ଭେଜିବ "ତାର"
'ଶକ୍ତ ବେରାମ, ଦେହ ମନେ ଘୋର    ବଉହ ଜର ।'

ମନେ ପଡ଼ିଗଲା ପ୍ରିୟାର ମୂର୍ତ୍ତି          ସତେ କି ଚୋର !
ଚମ୍ପା ଫୁଲ ଗଛ ପତର ପରିକା          ଶିକ୍ଷଣ ଗୋରୀ ।
ମରାଳଗମନା, ହରିଣୀନୟନା          ଅଳପ କାଣୀ,
ନାଚିଲା ଆଖିରେ ଗୋଟି ଗୋଟି ଯେବେ          ପ୍ରିୟାର୍ ଠାଣି ।
ଠିଣ ମୂର୍ତ୍ତିର ଠଣା ପରି ଗୋଲ          ଜୀନ ନାଶ,
ଠ ପରି ବର୍ତ୍ତୁଳ ଗାଲ ଦୁଇଟିକୁ          ଉପମା କିସ ?
ପାଚିଲା ଗାମ୍ଭାରୀ ପରି ଓଠ ରଙ୍ଗ          ଦେଖାଇଛି ବୋଲି
ପାନ-ପିକ-ବୋଲା ରାମଧନୁ ଛବି          ଚରଣେ ଦଳି ।
ଦନ୍ତରୁଚି ତ ଅଙ୍ଗାର କାଟଣ          ଖୀରର ଗୋଳା,
ଫିକା କପାଳଟି ପୋଡ଼ଲ ସମାନ          ଦେଖାଇଛି ଖୋଲା ।
ଦାଢ଼ୀହୀନ ତାର ଓଷ୍ଠ ଶବୁକଟି          ଟପାଲୁଙ୍ଗ ପରି
ଅଳପ ଲଜର ଶିରି ପଡିତ ନଥୁଁ          ଅଲପେ ଝରି ।

ଏପରି ପ୍ରିୟାର ରୂପ, ଗୁଣ, ଛବି          ପଡ଼ି ମୋ ମନେ
ଡାକିଲା ବିରହ ମାତଲିଆ ଜର          ଏ ଦୀନ ଜନେ ।
ଅତୀତର ସବୁ ନେଲା, ନାଲି ଛବି          ଉଦୟ ହେଲା
କି ଦୁରୁଯୋଗରେ କାହା ମୁହଁ ଚାହିଁ          ରାତି ପାହିଲା ?
ତାକୁ ପାଇ ମୁଁ ତ ଜୀବନ ବଞ୍ଚିଲି          କଲି ଯେ ପାଞ୍ଚି
"ରହ ପ୍ରାଣସଖୀ ଭରା ପ୍ରେମନଈ          ଉଚ୍ଛୁଳା ଉଠି
ନେଉଥିବ ଭସାଇ ଯିବ ଡୁବି ତହିଁ          ନ ଥିବ ଶଙ୍କା
ବୁଡ଼ିଯାଏ ଯଥା ଅତଳ ପୋଖରୀ          ଜଳରେ ମୀନ ।"
ବୋବାଳି ଶୁଣି ମୋ ସାଙ୍ଗ ଟୋକାସବୁ          ଦେଖାଇଲେ ରୁଣ୍ଡ,
ନ ଥିଲି ମୋ ଚେତା ବିରହ ବ୍ୟଥାରେ          ଗଡ଼ାଇ ମୁଣ୍ଡ
ଲେଉଟୁଥିଲି ଖାଲି ଭୂଇଁ ଧୂଳିଟାରେ          ମିଳନ ଚିନ୍ତା
ଶୀଘ୍ର ପାଇ ସେ ଆମ୍ଭୁଲାନସ ଗାଡ଼ି          ଆଣିଲେ 'ଡାକ୍ତର' ।

ଯେତେ ମୁଁ କହିଲି ଭଲ ମଟିଷ୍ଠା ଛାଡ଼ ହେ ବାବୁ
କିଏ ଶୁଣେ ମୋର ଖାଲି କଥା ଗୁସା ସକଳେ କାବୁ ।
କିଏ ସେ କହିଲା "କଲିକ୍" ପୁଣି କେ ନିଉମୋନିଆ
ଜ୍ବରର ଉପରେ ବଂଧା ହୋଇଁ ମୁଁ ତ ହେଲି ଛାନିଆ ।
ଇନ୍‌ଜେକ୍‌ସନର ଦଂଶନ ଲଭି ହେଲା ମୋ ଜ୍ଞାନ
ଶୁଣିଲି କହୁଛି ଡାକ୍ତର—"ଏ ଯେ କଲିକ୍ ପେନ୍ ।"
ମନେ ମନେ ତାର ପ୍ରତିବାଦ କରି କହିଲି ମୁହିଁ
"ଏହିଟି କଲିକ୍, ପାଁଚନ ସ୍ବାର ମଧ୍ୟରେ ନାହିଁ ।"*

---

*ପ୍ରଥମେ ୧୯୩୪ ସାଲରେ "ଉତ୍ସବନ୍ଧ"ରେ ବାହାରିଥିଲା । ଏଠାରେ କେତେକାଂଶ ବଦଳାଇ ଦିଆଯାଇଛି ।

# ହନୁମାନର ଗୋତ୍ର

ହନୁମାନର ଗୋତ୍ର କିସ ହେବ ବେ ଅଛି ସ୍ଥିର,
ସ୍ଥିର ହେବ ସ୍ଥିର ବୀର ଓଡ଼ିଆ ଠାକୁର ହଲେ ସ୍ଥିର ।
ବସିଲ ସେଠି ତର୍କ-ସଭା ତର୍କ-ଅଲଙ୍କାର
ବାଚସ୍ପତି, ବିଦ୍ୟା-ବାଗୀଶ, ଅଙ୍କୁର ଧୁରନ୍ଧର
ଆଦି ସବୁ ପଣ୍ଡିତଙ୍କ ଲାଗିଲା ବଡ଼ ମେଳା
ସବୁଏଲ ସେଠି ବକ୍ତା,—ଗୁରୁ; ଜଣେ କେ ନାହିଁ ଚେଲା ।
ଶ୍ରୋତାର ସ୍ଥାନ ଶୂନ୍ୟ ସେଠି ଚଉକି ଶବ୍ଦ ଛଡ଼ା,
କରତାଳିରେ ଫାଟିବ କାନ ସେଠାରେ ଅତଡ଼ା ।

ଠାକୁର ହଲେ ବସିଲ ସଭା, ବକ୍ତୃତାର ସୁଅ
ଚାଲିଲ ଛୁଟି, ଉଚ୍ଛୁଳି ଉଠେ ସବୁ ଗାଡ଼ିଆ, କୂଅ ।
ପ୍ରଥମେ ଉଠି ଶାସ୍ତ୍ରପାଣି, ନୈୟାୟିକ ଦାସେ
କହିଲେ, "ଶୁଣ ସୁଧୀବୃନ୍ଦ ଅପୂର୍ବ ଏ ରସେ—
ହନୁମାନ ଯେ ଓଡ଼ିଆ ଥିଲା ପ୍ରମାଣ ତାର ଆମେ;
ଆମର ଏ ଶିବ ଦେଖେ, ପୁଣି ତ ଆସ ନାମେ
ପ୍ରମାଣ ତାର ବହିଲ ଲେଖା, ରାମସେବକ ହନୁ,
ମୋ ନାଁ ବନ୍ଦେ ଶ୍ରୀରାମ ଦାସ ଆସ୍ଥ ପର ତନୁ ।
ଯଗୁରପାଦି ଲାଞ୍ଜ କାହିଁ ? ପଚ୍ଛି ନ ଭାଲୁରନ୍ ?
ବିବର୍ତ୍ତନ ନିୟମେ ଆମେ ହେଲୁଁ ଲାଙ୍ଗୁଳହୀନ୍ ।
ଦେଖି ତ ଥିବ ଗାଡ଼ିଆ ଜଳେ ବେଙ୍ଗଫୁଲର ଗଛ
ପ୍ରଥମେ ତାର ଲାଙ୍ଗୁଡ଼ ଥାଏ ଜନ୍ମ ସାଥି ସାଥି ।

ମାନ ଯେତେ ବଢ଼େ ସେ ଛୁଡ଼େ ଲଙ୍ଗୁଡ଼ଟା ତାର
ଶେଷରେ ସେ ତ ହରାଏ ତାର ଉତ୍ତରାଧିକାର ! !
ସେଇପରି ତ ପୁରୁଷକ୍ରମେ ବିବର୍ତ୍ତିତ ହୋଇ
ହରାଇ ଅଛି ଲାଂଜ ଆମେ ହେଉଛୁଁ ହାଇଁପାଇଁ ।
ତା'ପରେ ଅଛି ଯୁକ୍ତି ଏକ କର ହେ ଅବଧାନ
ଏକଦା ହନୁ ଉଡ଼ିଲା ଧରି ସେ ଗଂଧମାଦନ ।
ଗଲା ସେ ଉଡ଼ି ଯୋଜନ ଶତ, ସାତ ସାଗର ଡେଇଁ
ହୋଇଲା ପାର ଅଙ୍ଗ, ବଙ୍ଗ, ମଗଧ ଦେଶ ଯାଇ ।
ବଙ୍ଗାଳିଏ ଦେଖିଲେ ଯେବେ ହନୁ ଆକାଶେ ଉଡ଼େ
କହିଲେ ଅତି ଆଶ୍ଚର୍ଯ୍ୟରେ "କେ ଯାଚ୍ଛେର ଉଡ଼େ,"
"ଉଡ଼ିୟା ଯାୟ, ପାଖା କୋଥାୟ ?" ସେଇଦିନୁ ତ ହେଲା
ହନୁମାନର "ଉଡ଼ିୟା" ନାମ—ସେଥିରୁ "ଉଡ଼େ" ହେଲା !
ଏଥିରୁ ତୁମେ ପାଇବ ବୁଝି ହନୁର ବଂଶଧର
ଭାରତ ଦେଶେ ଓଡ଼ିଆ ଛଡ଼ା ଅଛ କେ କହିପାର ?
ଆଜି ଯେ ଆମେ "ଉଡ଼ିଆ" ବୋଲି ବଙ୍ଗ ଦେଶେ ଜଣା
ଉଡ଼ନ୍ତା ହନୁ ଔରସରୁ ଜନ୍ମ ତାର ଗଣା ।
ଅତଏବ ଭାଇ ହନୁମାନଙ୍କୁ ଓଡ଼ିଆ ଛଡ଼ା କିସ
କହିବ ତମେ ?" କହି ବସିଲେ ଦାସେ ପୋଢ଼ି ଯେ ନାଶ ।
ବାଜିଲା ତାଳି ଉଠିଲା ଖାଲି "ଜୟ ଓଡ଼ିଆ" ନାଦ
ବୀର ଓଡ଼ିଆ, ବଡ଼ ବଢ଼ିଆ, ଛୁଟିଲା ପ୍ରମାଦ ।

ଦାସଙ୍କ ପରେ ଉଠିଲେ ଜଣେ ବେଦୀରେ ମହାବାହୁ
(ନାମଟା ତାଙ୍କ ମନେ ନାଇ, ଶ୍ରୀ—ଚରଣ ରାହୁ)
କହିଲେ ଖାଲି ହନୁଟା ନୁହେଁ, ହେଲେ ପିଏ ଆଉ—

ରାବଣ, ସିଙ୍ଗ, ଶ୍ରୀଟେଟିଚେନ୍ୟ, ସୂର୍ପଣଖା ଆଦି
ସମସ୍ତେ ତ ଓଡ଼ିଆ ପିଲା, ନାହିଁ ରେ "ଜନୁ", "ପଦ" ।
ଦୁଇରେ ଦୁଇ ମିଶିଲେ ଯଥା ମନକୁ ହୁଏ ଗ୍ଲାର
ସବୁ ମହାପୁରୁଷେ ଥିଲେ ଓଡ଼ିଆ ସେହିପରି ।
ରାବଣ ଯେ ଓଡ଼ିଆ ବୋଲି ଏହା କ ନାହିଁ ଜାଣି
ଆମ ଗାଁର ପଣ୍ଡିତ ଜଳନ୍ଧର ପାଣି
ଦୁଇଶ ବର୍ଷ ତଳର ଲେଖା ତାଳପତ୍ରର ପୋଥି
ସେଥିରେ ସବୁ ଏଇ କଥା ସେ ଆଗରୁ ଲେଖିଛନ୍ତି ।
ତା'ପରେ ପୁଣି ବାନାମ୍ବର ମିଶ୍ର ନାଟ୍ୟକାର
ଆମ ଗାଁରୁ ଗ୍ଲାର କୋଶରେ ଥିଲା ତାଙ୍କ ଘର
ତାଙ୍କର ଏକ ଅପ୍ରକାଶିତ ପୋଥିରେ ରାବଣକୁ
କହିଛନ୍ତି ଓଡ଼ିଆ ଖର, ନ ଭୁଲ ଏହାକୁ ।
ତାଙ୍କ ଶଳା, ଶଳାର ମାମୁ ମୁହଁରୁ ଏଇ କଥା
ଶୁଣିଚି ନିଜେ, ପ୍ରତ୍ୟକ୍ଷ ଏ କଥା କ ଅନ୍ୟଥା ?

"ରାବଣ" ଏଇ ଶବ୍ଦ ଶେଷେ "ବଣ" ଯେ ଦେଖ ତୁମେ
ଖାଣ୍ଟି ଏକା ଓଡ଼ିଆ ଶବ୍ଦ, ନାଇ ଭାରତ ଭୂମେ
ଅନ୍ୟ କାହିଁ; ହୁଅଇ ମନେ "ରାଇବଣିଆ" କମେ
'ରାବଣ' ଖଚୁ ହୋଇଲା କୁହା ଲୋକଙ୍କ ମୁହଁ ଭ୍ରମେ ।
ହାସ୍ତରେ ହାସ୍ତ ଆଜିରେ କାହିଁ, ଖାହିଁ ସେ ସ୍ୱର୍ଣ୍ଣପୁରୀ ?
ଜଙ୍ଗଲର ଝୁଲା ଊଙ୍ଗ ରହିଲା ଦୂରେ ଝୁରି !
ତା'ପରେ ଶୁଣ ଆହୁରି କାରଣ ଗବେଷକ ବୋଧ—
"ଲଙ୍କାର ଯେ ସ୍ୱର୍ଣ୍ଣଧୂଷ୍ଟ ନାମଟା ଥିଲା—ନୁହେଁ ?

ଆଜିକାଲିର "ସୋନପୁର"ର ତାହାହିଁ ନାମାନ୍ତର,
ପଶ୍ଚିମ ପାର ସାଗର କାହିଁ; ଏ କଥାଟା କି ଗଳ୍ପ !
ଭୂଇଁକମ୍ପରେ ସାଗରଟା କି ହୋଇପଡ଼ିବା ପୋତି
ବଡ଼ ଗୋଟାଏ ସମ୍ଭବପର କଥା ଭାବୁଚ ଅତି !!
ତା'ପରେ ଭାବ ଓଡ଼ିଶା ଦେଶେ ନ ଥିଲେ ଲଙ୍କାପୁର
ଲଙ୍କାମରିଚ କଥାଟା ଏଥି ଚଳନ୍ତା କି ପ୍ରକାର ?
ନିଆଁ ନ ଥାଇ ଧୂଆଁ କି କେବେ କେଉଁଠି ହୁଏ ଜାତ
ପିଲା କି କେବେ ପ୍ରସବ ହୁଏ ନ ଥାଇ ତାତ ମାତ ।
ତାପରେ ଶୁଣ ହନୋଲୁଲୁର ପ୍ରୋ'ର ଜଣେ ସାଥି ?
ଲେଖିଅଛନ୍ତି ବିଦେଶୀୟ ମାସିକପତ୍ରେ ଅତି
ଚମତ୍କାର ପ୍ରବନ୍ଧଟିଏ ପ୍ରମାଣ କରି ଦେଇ
ରାବଣ ଯେବେ ରାଜୁତି କରୁଥିଲା ଆମରି ମନ୍ତ୍ରୀ ।
ଶିଶୁଶ୍ରୀକୃଷ୍ଣଙ୍କୁ ଅଣାଇ ସେ ଯେ ପଢ଼ାଇଥିଲା ପାଠ
ପୁରୀଧାମରେ, ଆଜି ବି ଅଛି ସେଠି ଗୋଟାଏ ମଠ ।
ଏ ସବୁ କଣ ମିଥ୍ୟା ହବ ? ଓଡ଼ିଆ ତମେ ଅଂଧ
ଛାଡ଼ିଲନି ନିଜକୁ ତୁମେ କରମ ତମ ମନ୍ଦ ।
ବାହାର ଲୋକେ ବିଦେଶୀ ଆସି ଲେଖିଲେ କେତେ ବହି
ଆମ ଦେଶରେ ଆମକୁ ଆଉ ଆମ ଜିନିସ ନେଇ ।
ତମେ ରହିଲ ଭୋଲ, ପାଙ୍ଗି, ଅଳସି, ଘରକଣା
ଆଣଟର ଆଣ ଉଦ୍ଦୀପନା, ଆଣରେ 'ରଣରଙ୍ଗଣା' ।"
ବାଜିଲା ତାଳି, ଉଠିଲା ନାଦ "ଜୟ ଓଡ଼ିଆ" ବୋଲି
ବଡ଼ଠାକୁର, ବଡ଼ ଦେଉଳ, ବଡ଼ଦାଣ୍ଡର ଧୂଳି
ଝାଡ଼ିନ ହେଲେ ଗଳ୍ପରେ ଭରି, ଶୁଭିଲା ହରିବୋଲ
ବନ୍ଦିତ କାବ୍ୟାମୃତ, ଅଗାଧ ହାଲଗୁଲ ।

ଏହାଙ୍କ ପରେ ହୋଇଲେ ଠିଆ ସଭାର ଉଡ଼ବଡ଼
କୋଦଣ୍ଡାକାର କୋଦଣ୍ଡ ରାଏ, କହିଲେ, "ଖଡ଼ା, ବଡ଼
ବଡ଼ ଓ ଖଡ଼ା ଏକଇ କଥା, ବୁଝିବା ଖାଲି ଭ୍ରମ
ନୂତନ ଏକ ତଥ୍ୟ ମୁଁ ଯେ ପାଇଛି ଅନୁପମ ।

ପୂର୍ବ ବକ୍ତା ଅତୀତ କଥା କହିଲେ ସବୁ ଖାଲି
ଏ ଯୁଗଟାକୁ ସେମାନେ ଗଲେ ବିଲକୁଲଇ ଭୁଲି ?
ତେଣୁ ମୁଁ ଦେବି ପ୍ରମାଣ କରି କିପରି ଓଡ଼ିଆଏ
ଗଢ଼ିଲେ ନୂଆ ପୃଥିବୀକୁ ଅଟଲାଣ୍ଟିକଯାଏ ।

ପଢ଼ିଥିବ ତ ବହୁତରେ ତୁମେ ଆମେରିକାର କଥା,
ଜାଣ କି ତୁମେ ଓଡ଼ିଆ ଜଣେ ଥିଲା ତା ପାଟ ମଥା ?

ଆମେରିକାର ଯୁକ୍ତରାଷ୍ଟ୍ର ଭୂତ ସଭାପତି
ଉଡ୍ର ଉଇଲସନ ଯେ ଆମ ଯେଯେବାପାଙ୍କ ନାତି ।
"ଉଡ୍ର" ଏଇ ଶବ୍ଦଟା କି ଓଡ଼ିଶା ଛଡ଼ା କାହିଁ
ଅନ୍ୟ କେଉଁ ଜାତିର ମୁଖ ପ୍ରଯୁଜ୍ୟ ହେବ ଭାଇ ?

ଏଥିରୁ ଜଣା ଓଡ଼ିଆ ପୁଅ ହୋଇ ଦରିଆପାର ।
ବହୁ ଦୂରରେ ବସତି ତାଙ୍କ ଥିଲା ରଚନା କରି ।

ଦେଶ ଓ କାଳ, ପାତ୍ର ଭେଦେ ତାହାର ପରିଣତି
ଆପଣା ଗୋଡ଼ ନାତରେ ପୋଷି ହୋଇଲା ସମ୍ପତ୍ତି ।

ଚଳଦଳରୁ ଉଠିଲା ରୋଳ, ଜୟ କୋବିଦ ଦେଶ
ପାରି ଧରିର ଯେତେକ ଜ୍ଞାନୀ, ଗବେଷଣ, ମନୁଷ
ସର୍ବେ ଏଠି ଏକାକାର ସର୍ବେ ଏଠି ଠୁଳ,
ଜୟ ଓଡ଼ିଆ, ବଡ଼ ବଢ଼ିଆ, ଉଠିଲା ହରିବୋଲ ।

ପାହୁଲ ଗତ ଭାଙ୍ଗିଲା ସଭା ଫେରିଲେ ସଭାଜନ
ଚୌଦ୍ଦ ପୁରୁଷ ହନୁମାନର ହୋଇଲେ ପରିବାଣ ।*

---

* ଏଇ ଶିରୋନାମାରେ କବିତାଟି ପ୍ରଥମେ ୧୯୩୪ ସାଲରେ ଉସଚନ୍ଦରେ ପ୍ରକାଶ ପାଇଥିଲା । ମାତ୍ର ତାର ପାଣ୍ଡୁଲିପି ନ ମିଳିବାରୁ ଏଠାରେ ପୁନର୍ଲିଖିତ ପ୍ରକାଶ କରାଗଲା ।

# ଚନାଚୁର ଗରମ

( ବିଜ୍ଞାପନ )

ଚନାଚୁର ଗରମ
ବଡ଼ ମଜାଦାର ବାବୁ
ଚନାଚୁର ଗରମ ।
ଏ ଚଣା ଖାଇ ଲଙ୍କାପତି
ସୀତା କଲା ହରଣ ।
ଏ ଚଣା ଖାଇ ରାମଚନ୍ଦ୍ର
ବଧିଲେ ରାବଣ ।
ବାବୁ ! ଚନାଚୁର ଗରମ ।

ଏ ଚଣା ଖାଇ ହନୁମାନର
ଲାଞ୍ଜ ହେଲା ମୋଟା
ଏ ଚଣା ଖାଇ ମହାବଳୀ
ଭୀମ ହେଲା ପେଟା ।
ଏ ଚଣା ଖାଇ ହନୁ ବେଟା
ପୋଡ଼ିଲା ହେଲେ ଲଙ୍କା,
ଏ ଚଣା ଖାଇ ରାବଣ ହନୁ
ଲାଙ୍ଗୁଡ଼ କଲା ବଙ୍କା ।
ଏ ଚଣା ଖାଇ ରାବଣକୁଳ
ନାଶିଲେ ଶ୍ରୀରାମ ।
ବାବୁ ! ଚନାଚୁର ଗରମ ।

ଏ ଚଣା ଖାଇ ସୀତାରାଣୀ
ହେଲେ ଗର୍ଭବତୀ
ପାଁଚୁଟା ସ୍ୱାମୀ ଥାଇଁ ଦ୍ରୌପଦୀ ,
ପାଲଟି ଗଲେ ସତୀ ।
ଲୌହା ଭଂବଳଧାରୀଙ୍କୁ ବଳ
ଏ ଚଣା ଚୋଟିଫଟ ।
ଖାଇଲେ ଥରେ ବୁଝିବ ବାବୁ
ନଗଦ ସ୍ୱାଦ ଦାମ ।
ବାବୁ ! ଚନାଚୁର ଗରମ ।

ଏଇ ଚଣାରୁ ଗୋଟାଏ ଖାଇ
ପିଇଲେ ଟୋକେ ପାଣି
ହାତୀରୁ ବେଶୀ ତାକତ ହେବ
ନାଚିବ ତାଣ୍ଡ୍-ଧୂନ ।
ଗୋଟାଏ ଚଣା ମଦୁ ସାଙ୍ଗରେ
ଥରେ ହେ ଦେଲେ ଗିଳି,
ବନ ତ ଯିବ ଭ୍ରମର ବାପ
ଶତସିଦ୍ଧଙ୍କୁ ବଳି ।
ଏଇ ଚଣାକୁ ଖୀର ସାଙ୍ଗରେ
ଭରିଲେ ବାଟି ପାନ,
ପାଲଟି ଯିବ ବାଉଁଶକାଂଠା
ମହା ପହଲ୍‌ୱାନ ।
ଏଇ ଚଣାରୁ ଗୋଟାଏ ଖାଇ
ଅଇଁସି ଦେଲେ ପେଟ ,

ଓଳିଆ ପର ହୋଇବ ବାବୁ
କୁହୁମି ଟପାଇ ଗେଟ ।
ଭଗ୍ୟମନ୍ତ ଏ ଚଣାର ବଢ଼,
ଭେଳ୍‌କି-ଲଗା ନାମ ।
ବାବୁ ! ଚନାଚୁର୍ ଗରମ ।

---

# ଆମ ଗାଁର ମୁରଲୀଧର ପଣ୍ଡା

ଆମ ଗାଁର ଶ୍ରୀପଞ୍ଚ ବାବୁ
ମୁରଲୀଧର ପଣ୍ଡା
ଦେଶପ୍ରେମୀ ସେ ଅଟନ୍ତି ବଡ଼
ମୁଣ୍ଡ ତାଙ୍କ ନଣ୍ଡା ।
ଗୁମ୍ଫ ଦାନ୍ତ ଗାନ୍ଧି ମତେ
ଇଷତ୍ ଅଟେ ଭଂଗା,
ପଣ୍ଡ ଜଠି ଗୁଲନ୍ତି ଯଥା
ସମୁଦ୍ରର ଡଂଗା ।
ଇସ୍ତ୍ରୀ ମଲା ଦିନରୁ ସେ ତ
ବୋଲାଉଛନ୍ତି "ସ୍ୱାମୀ",
ପଟେଙ୍କାଙ୍କାର ସମିତି ଖୋଲି
ଅଛନ୍ତି ମୋକ୍ଷକାମୀ ।
ଛୁଅନ୍ତି ନାଇ ପୁସ୍ତ, ଜଲବ,
ଖାଆନ୍ତି ଦେଶୀ ମଣ୍ଡା ।
ଆମ ଗାଁର ମଜଡ଼ମଣି
ମୁରଲୀଧର ପଣ୍ଡା ।

( ୨ )

ଛାତବୁଣା ଖଦ ଛଡ଼ା ତ
ପିନ୍ଧନ୍ତିନ କନ୍ଥା,
ଯେତେବେଳେ ଦେଖିବ ଖାଲି
ଚରଖା ଗୁଲୁଅଛି ।

ବୋତଲ ଛାଡ଼ ମାଛି ସହରର
ପିଅନ୍ତି ବାବୁ 'ନବ',
ଖାଅନ୍ତି ଗାନ୍ଧିମାର୍କା ବଡ଼
ବଣ୍ଟିଲେ ଧନସାର ।
"ଜୟ ହିନ୍ଦ୍" ଗୁଡ଼ାଖୁ ଘଷି
ଧର ତିରଂଗା ଝଣ୍ଡା
ବସାଜୁଚନ୍ତି ଅମ ଗାଁର
ମୁରଲୀଧର ପଣ୍ଡା ।

( ୩ )

ହିଂସା ଭାଲେ ହୋଇବ ବୋଲି
ଅମିଷ ଛାନ୍ତି ଛାଡ଼,
କେବେ କମିତ ଅହିଂସା-ମାଂସେ
ସେବନ୍ତି ଉରକାସ୍ତ ।
ଅମୃହତ୍ୟା କେବେ ହେଧ ବା
ମୁରୁଗୀଠାଏ କରେ,
ଅଥବା ଯେବେ ଛାଗଳଠାଏ
ବାତଜ୍ୱରରେ ମରେ,
ସେଇ ଅହିଂସା-ମାଂସ ବାବୁ
ଟିକଏ ଦ୍ୟନ୍ତି ଗୃଣ
ଏକାଦଶୀ ଓ ପୁନଅ ଛାଡ଼
ବହୁତ ପାଞ୍ଚି ଦେଖ ।
ଅଛନ୍ତି ପୋଷି ବହୁ କୁକୁଡ଼ା,
ଛାଗଳ ଗଣ୍ଡା ଗଣ୍ଡା ।

ଆମ ଗାଆଁର ଶ୍ରୀଯୁକ୍ତ ବାବୁ
ମୁରଲୀଧର ପଣ୍ଡା ।

ଚିନି, କପଡ଼ା, କିରାସିନିର
ଦୋକାନ ଛନ୍ତି ଖୋଲି,
ଲୋକଙ୍କ ହିତ ପାଇଁ କେବଳ
ଗାଁର ହାତେ ଗୋଲି ।
ଦ୍ୱିଗୁଣ ଦାମେ ଦୋକାନେ ତାଙ୍କ
ବିକି ହୁଏ ତେଲ,
ସରସିଦ୍ଧା ଏକଗୁଡ଼ିଆ
ଦେଶାର୍ଥେ କେବଳ ।
ଧଳା-ଖଦଡ଼-ଭୂଷିତ-ବପୁ
କଳାବଜାର ଖଣ୍ଡ,
ବଡବଡ଼ୁଆ, ମନ୍ତ୍ରୀ, ଲାଟ
ନୁଅନ୍ତି ଲଣ୍ଡ ଦଣ୍ଡ ।
ଭୋଟ ବେଳେ ବାବୁଙ୍କ ନାଁରେ
ଥରଇ ଗାଁ ଗଣ୍ଡା
ଆମ ଦେଶର ମଉଡ଼ମଣି
ମୁରଲୀଧର ପଣ୍ଡା ।

(୪)

ଦେଖା ହୋଇଲେ ମୁରୁକି ହସି
"ଜୟ ହିନ୍ଦ୍" କହ
ତମ ଆଗରୁ କରିବ ସେତ
'ନମସ୍ତେ' ନହିଁ, ନହିଁ ।

ଭିଲ୍ଲ ହାକମ ସ୍ତ୍ରୀ କୁଆଡ଼େ
ମହାପ୍ରସାଦ ଦେଇ—
ଧରମ ଝିଅ କହନ୍ତି ତାଙ୍କୁ
ପୁଣ୍ୟରେ' ଛନ୍ତି ହୋଇ ।
ସୋମସୁନ୍ଦରେର ମାର୍ଓ୍ୱାଡ଼ର ସେ
ଧର୍ମ ଭାଇ ପୁଣି,
କହୁ ନା କହୁ ତାଙ୍କର ସେଠେ
ସାହେବ, ସାହେବାଣୀ ।
ମହାପ୍ରତାପୀ, ମହାତାପୀ ସେ
ମହାନ ପଟ୍ଟଚଣ୍ଡା ।
ଆମ ଗାଁର ପ୍ରପଞ୍ଚ-ସାର
ମୁରଲୀଧର ପଣ୍ଡା ।

# ସ୍ୱରଜ୍ୟ ପୋଟଳ

ଭେଇଁ ଭେଇଁ ଗଳ୍ପ ବଣି ।
କି କାଳ ପଡ଼ିଲା, ପିଂଧିଲେଣି ଖଦୀ
ସାହେବ ଓ ସାହେବାଣୀ ।

ଦାଆରେ କାଟିଲ୍ ଘାସ ।
ଛେଳି ବଳି ଯାଇ ହାତୀଟେ କଣିଲା
ଆମ ଗାଁ ଧରମୁ ଦାସ ।

ଧୁଙ୍ଗ ଉଠିଲ ପାଏ ପାଣି,
କି କାଳ ପଡ଼ିଲା ଟଙ୍କାକେ ଧାନ
ହୋଇଲାଣି ଦ' ଗଉଣୀ !!

ଖଣ୍ଟା ଲାଗେ ଛେନା ବରା,.
ତିରଙ୍ଗା ଓ ନାଲି ପତାକା ଉଡ଼ରେ
ଲାଗିଛି ଝଣା ଓଟର ।

ଜହ୍ନିଫୁଲ ଦଶେ ତୋରା,
ଧଳା ଖଦୀ ପିନ୍ଧା କଳା ବଜାରରେ
ଭରିଲେଣି ଜଦା ଚରା ।

ବଳା ବାଜେ ରଣିଝିଣି,
ଦେଶାର୍ଥ ହୋଇଲ ସୁନାରୁ ମହଙ୍ଗା
ଚିନି, ଲୁଗା, କିରାସିନି ।

ଗୋପରେ ବାଜିଲା ବଂଶୀ
ଅମେରିକା ପୁଁଜି ପୀରତି ଫାନ୍ଦରେ
ଶ୍ରୀମତୀ ତ ଗଲେ ଫସି ।

ଚାଁଦକୁ ଗ୍ରାସିଲା ରାହୁ,
ସ୍ୱଦେଶୀ ଡଲାର କଡରେ ଦେଶକୁ
ବନ୍ଧା ଦେଲେ ମନ୍ତ୍ରୀବାବୁ ।

ଗାଈରେ ପଶିଲା ଓଧ,
କିଏ ସେ ଭାସୁର ସର ଲହୁଣୀରେ
କାହାକୁ ନ ମିଳେ ଖୁଦ ।

ଘରକଣେ ଭୂଆଷୁଣୀ,
କିଏ ପିଠେ ଚୁମ୍ବା ଡନାଡାଙ୍କ ଚୋଟ,
କା ଘର ନୁହେ ଗୁଜୁରଣି ।

ବାଡ଼ରେ ସେଉଲି ସାଗ,
ରଙ୍କାଏ ପିନ୍ଧିଲେ ଗେରୁଆ ବସନ
ଗୁଡ଼େଲେଣି ସୁନା ପାଗ ।

ଢୋଢ଼ାର ଉଠିଲା ଶିଙ୍ଗ,
ସବୁ ରଙ୍କା ଏବେ ଗଣଢଂଙ୍ଗ କଲେ
ମଙ୍ଗୁଆଳ ମୋଡ଼େ ମଙ୍ଗ ।

ନଇଁ ମୁଁ ଫୁଙ୍କିଲି ଚୁଲି,
ସ୍ତ୍ରୀ ବାଳ ବୃଦ୍ଧ କାହୁଁ ନାହିଁ ଭେଦ;
ଗୁଳିର ଅହିଂସା ଗୁଳି ।

ଚେଙ୍ଗିଜର କାଟିଲ୍ ବେକ;
ଦେଶ ଯାଗ ଭାଟେ  ରକତ ନଈ ଲେ
ବହିଲେ ବୁଢ଼ବ ଟେଭକ ।

କଂସେଇକ ଦେଲ୍ ହଡ଼ା
ସବୁ ଶଙ୍କର ତ  ବଢ଼ିଲଣି ଭାଙ୍ଗ
ମଣିଷ ଜୀବନ ଛଡ଼ା ।




# ଶୁଆସାରୀ ସମ୍ବାଦ

ଶୁଆ ପଚାରଇ ସାରୀ ଲୋ, ଏବେ ହୋଇଲା କଣ
ପୁରୁଷେ ଦେଲେଣି ଓଢ଼ଣା, ସ୍ତିରୀ ମୋଡ଼ନ୍ତି ନଶ ।
ଷ୍ଟାଣ୍ଡରେ ସବୁ ଠେଙ୍ଗାଲେ, ଭଲ ଲୋକେ ଲୁଚିଲେ,
ଗାଁଏ ଗାଁଏ କଲା ବେପାରୀ ଚତୁର, ଛଳ ରଚିଲେ ।
ପଢ଼ୁଆ ଜାଣିବା ଲୋକେ ତ ବସି କାଟିଛନ୍ତି ଘାସ,
ଦାରପଢ଼ା ଘରବୁଢ଼ାଏ ବନିଗଲେ ଗଣେଶ ।
ମୂର୍ଖେ ବନିଲେ କୋବିଦ ସାହାସ୍ରତ ଘଉଡ଼େଖ;
ଦେଶ ପ୍ରେମେ ଠିକା ନେଲେଣି କାନଭସ୍ପି ଥୋବେ ।

ସାରୀ କହେ ଶୁଣ ଶୁଆ ତୁ ବିଶ୍ୱଦେଶର ଏହା,
ପୃଥ୍ୱୀ ଆନ ଧନ ଦାନକୁ; ଏହା ଭୁଲି ନ ଯାଅ ।
କହୁ ବୋଲି ଯିଏ ପାରିଲା, ରଖି ପାରିଲା ସେଇ—
ମୃଦୁସୁଲି ଢିଗିପେଲଙ୍କ ବେଳ ଅଛୁ ତ ପଡ଼ି ।
ଶୁଆ ପଚାରଇ ସାରୀ ଲୋ ! ସେମ ସାଇଜେ କଆଁ
ଲୋକରେ ମରନ୍ତି ମଣିଷ, ଜଳେ ମଶାଣି ନିଆଁ,
ଠାଏ ଠାଏ କିଆଁ ମଣିଷ ପିଲା ଜୁଅନ୍ତି ନଗ୍ନ
ନାରୀ, ଶିଶୁ, ଯୁବା, ବୁଢ଼ାଏ ସବୁ ଅବଗ୍ନ, ବଗ୍ନ ।
ସାରୀ କହେ ଶୁଆ ଜାଣିନୁ, ତୁଟା ଏଡ଼କ ଓଲି
ଭବ ରାଜ୍ୟ ଜାଣ ନ ଚଲେ ପ୍ରଭୁ ନାମରେ ଚଲୁ
ତଉବ କିଏ ସେ କାହିଁକି, କଆଁ ବିଦେଶୀ ଧନ
ଏ ଦେଶେ ଆସିବ—ଯେଉଁଠି ଗୋଳ ଭଅନ୍ତି ଜନ ।

ଶିଶୁ ସ୍ୱାଧୀନତା, କଅଁଳା ପିଲା ସ୍ୱରାଜ ବଛା,
ଏ ତତ୍ତ୍ୱ ଶୁଣି ଲୋ ଯଦବା ତୋହ୍ର ନାମକ ସଚ୍ଚା
ଆପଣା ବାଟରୁ ଦୁଉଲ, ତେବେ ଟିକେ ତାର
ଏ ଭବ-କନ୍ଦକୁ କାଟିବା ହେଲା ଅତ ଜରୁର ।

ଶୁଆ ପଣ୍ଡୁରର ସାରୁ ଲୋ ଏବେ କ ହେଲା ହାଲ
ମଲମ୍ପୁନ୍ତିଆ ଏ ମୋଡ଼ଲେ ଦେଶ ଶାସନ କଲ ।
ତେଣେ କେଣେ ଚୀନ ମୁଲକେ ଶୁଣୁଁ ଏ କସ କଥା:
କାଳ କ ପଶିଲା ନଣ୍ଠାରେ, ସତେ କ ହଣ୍ଠହଣ୍ଠା ! !
ସାରୁ କହେ ଅରେ ଶୁଆରେ ତୁ ତ ଖରାପ ହେଲୁ
ଖାଇ ଦେଇ ପର ବୁଟି କ ପର ଦେଶକୁ ଭାଳୁ ?
ମଥା ତୋ ଗଲାଣି ଦଦିଉ, ଗ୍ରମ ଗ୍ରଲକେ ରହୁ
ଆପଣା ପଞ୍ଜୁରୀ ଛାଡ଼ ତୁ ଉଡୁ ତେଣେ କପାଇଁ ?
ସୁନା ପଞ୍ଜୁରୀରେ ମଦବା ସେ'କ ସହଜ ସୁଖ ?
ଚୀନ, ଋଷ କଥା ମିଛେ ତୁ ଭାବ ମନ୍ଦ ମୂରୁଖ ।
ଗ୍ରମା, ଶାମା, ଦାମା ମୋଡ଼ୁର ଯହିଁ ଶାସନ ଗୃହ
ସେଠି ତୋର ମୋର ସିନା ରେ ସାରୁ ମଦବା ଗ୍ରବ ! !

---

# ସ୍ୱାଧୀନ ଦେଶର ଦିଆଲୀ

ବରଷ ପରେ ଆସିଛି ଦେଶେ,   ଆସିଛି ଦିଆଲୀ,
ଦେ' ଜାଳି, ଦେ' ଜାଳି !
ବତୀରେ ଭରି ବୋତଲେ ତେଲ, ମାରି ଦେ ଦିଆସିଲି,
ଆସିଛି ଦିଆଲୀ ।
( ବତୀ ଓ ତେଲ୍ ଫବ ଏ ତ ! ସତରେ ବଲିହାରି ! )
ସ୍ୱାଧୀନ ଦେଶେ ଆସିଛି ଦୀପାବଳୀ ।

କିରାସିନି ଯେବେ ନ ମିଳେ ତୋତେ ହେବାରୁ କଣ୍ଟ୍ରୋଲ୍,
ଅଣରେ ଅଣ, ତାଳ ରେ ତାଳ, ଖାଣ୍ଟି ଜଡ଼ା ତେଲ୍ ।
ଶୁଦ୍ଧ ଜହ୍ନା ମାଲିସ୍ ତେଲ୍ ନ ମିଳେ ଯେବେ ତୋତେ
ବନସ୍ପତି ଘିଏ କାମଟା ଚଳାଇ ନେ ହାତେ ।
ଯେ ଯେତେ ଅଙ୍କ ପାରିବ ଜାଳି—ପାଇବ ପେଲ୍ ବତୀ,
ସେତିକ ତାର ବଢ଼ତିରୁ ହେବ ଅଦ୍ଭୁତ ବଢ଼ତି ।
ମୂର୍ଖ ହେବ ପଁଣ୍ଡିତ—ନୂଆ ପାହୁଆ ହେବ ଗଦା,
ପାଠହାତୀର ପାଲଟି ଯିବେ ଶୃଙ୍ଖିଲ୍ କେତେ ହଡ଼ା ।
ମାରେ ତୁ ଦିଆସିଲି,
ଜାଳ ଦେ ବତୀ, ଜାଳ ଦେ ଦୀପ, ଆସିଛି ଦୀପାବଳୀ ।

ଯେ ଯେତେ ମାରୁ ପାରିବ ପୋକ, ପାରିବ ଦଳି କୀଟ—
ଜନ୍ମ ଘର ଗୋଡ଼କୁ ଆମ ଖାଏ ଯେ ଗୁଡ଼ ଗୁଡ଼,
ସେତିକି ତାର ପାହୁଥ ଝୁଟେ ଉପରେ ଯିବ ଉଠି
ଶେଷରେ ହେବ ସ୍ୱର୍ଗବାସ ଧରାର କାମ୍ୟ ଲୁଟି ।
ଉଠ ହେ ନରନାରି !
ଅସିଶ ଦେଶେ ଦରଷ ପରେ ସ୍ୱାଧୀନ ଦିଆଲି ।
ଜାଳ ତୁ ଦୀପ, ପେଲରେ ବତୀ, ଢାଳ ରେ ଢାଳ ତେଲ
ଖାଣ୍ଟି ମାଲ୍ସ୍ ନଚେଲା ହାତେ, ନିଃସ୍ୱାର୍ଥରେ କର ।
ହେ ଜାଳି,        ହେ ପେଲ୍ ।
ଅସିଶ ଦିଆଲି ।

---

## ହେ ମୋର ସ୍ୱର୍ଣ୍ଣୀ, ସ୍ୱର୍ଣ୍ଣି, ସ୍ୱର୍ନ !

ସ୍ୱର୍ଣ୍ଣୀ, ସ୍ୱର୍ଣ୍ଣି, ସ୍ୱର୍ନ !
ଯେ ନାମେ ଡାକେ ସମାନ ମଧୁ
ଝରୁଛି ଏଥିା ଶୁଣି ।

ଯାହାଙ୍କୁ ଡାକେ ବ୍ୟାକରଣର
ନ ଥିଲେ ସ୍ୱାଦ ଜାଣି
ସମାନ ଭାବେ ବଢୁଥିବ ଯିବେ
ଶୁଣି ଏ ପ୍ରେମ ବାଣୀ ।

ତଥାପି କିଆଁ ଗୋଲକ ଧଂଦା
ବ୍ୟାକରଣର ଜାଲ
ଶଗଡ଼-ଛର, ଢେକାଲ୍‌-ଛର
ସବୁ ବରକ୍ରିକର ।

ଯାହାଙ୍କୁ ଲେଖେ ନିଃ ପ୍ରାଃ ସ୍କୁଲ
ପାସ୍‌ ଥିଲେ କର
ବନାନ ଛିକେ ଭୁଲ ହେଲେ
ଉଠିବେ ଖଡ୍‌ଗ ଧର ।

ନରମ ହବା ହୁରର କଥା
ଗରମ ହବା ସାର,
ଛନ୍ଦି ହେ ଯିବ ଝଗ୍ଡ଼ା ମୋର
ପ୍ରେମର ନମ୍ବର ।

'ଋ' କାର ଅଉ 'ୠ' କାର ପୁଣି
'ଣ' ଓ 'ନ' ଭେଦ,
ତତ୍ସମ ଆଉ ତଦ୍ଭବ ଛଡ଼ା
ଅନ୍ୟଟି କାହିଁ ବେଦ ?

ଉଚ୍ଚାରଣେ 'ଋ' ଓ "ୠ"
ସମାନ ପ୍ରାୟ ହୁଏ,
କେତେ ଜଣ ବା ଜିହ୍ୱା ତୋଳି
ଉଚ୍ଚାରନ୍ତି ଆହେ !

ମିଛରେ କାହିଁ କାଗଜ ପତରେ
ଗୁଳିର ଆଖୁ ଗୁଷ
ଛାପାଖାନାର ବଢ଼ୁଛି କାମ
ପ୍ରିୟାଙ୍କ ଅସନ୍ତୋଷ ।

ତେଣୁ କହୁଛି ସ୍ୱାଧୀ ଯୁଗର
ନୂତନ ଭାଷାକାର
ସଣୀଙ୍କ ସଣ 'ଋ' ଓ 'ୠ'
କର ହେ ଏକାକାର । *

* ସାହିତ୍ୟ ମନ୍ଦିରାରେ ବ୍ୟାକରଣ ସମ୍ବନ୍ଧୀୟ ଏକ ପ୍ରବନ୍ଧ ପଢ଼ି ରଚିତ

# କଳାପାନ ବବ

ସ୍ୱପ୍ନଟାକୁ ରସରେ ଭସା
କହିବା ପାଇଁ ଦେନା,
ମାନସିଂଙ୍କ ପ୍ରେମ କବିତା
ପଢ଼ି ମୁଁ ଅଚେତନେ—

ନିଦରେ ଥିଲି ଶୋଇ,
ହଠାତ୍ ଦେଖେ ସପନପୁରୀ
ଦରଜା ସବୁ ଫେଇ ।

ଗୋଟିକ ପରେ ଗୋଟିଏ ଆସି
ଦେଖାଇଲେ ଉଭା ପରୀ,
ଓଢ଼ଣୀ ଟାଣି ହଲାଇ ବେଣୀ
ସରଗ ଅପସରୀ ।

ବୁକୁରେ ମୋର ନିମିଷେ ହାଣି
ବାଁକ ଚାହାଣି, ଟାଣି
ପ୍ରେମ କତୁରି ଧାରରେ କାଟି
ମୋ' ଧଇରଯ ମୁଣି

ରଖିଲେ ବନ୍ଦ ଗୋଲ,
ମାନସିଂଙ୍କ ପ୍ରେମ କବିତା
କଲା କି ହରବର !!

ଦିନଟା ଯାଉ          ତା'ସ୍ ଖେଳି
ଅଛି ବାଲିଆ ହୋଇ
ପଡ଼ି ମୁଁ ଥିଲି          ସପନ କୋଳେ
ମଜାରେ ନିଦେ ଶୋଇ

ଟେବୁଲିଆ          ଉପର ଓଳା
ବ୍ରିଜ୍ ଖେଳେ ବାରି
ମନଟା ମୋର          ମଜିଲ ଥିଲା
ଦୁଃଖଠାରୁ ଯେ ଭାରି ।

ଭାବିଥିଲି ମୁଁ          ସପନ ଦେଖି
ଭୁଲିବି ସବୁ ଶୋକ,
ହାୟ କପାଳ !          ଓଲଟା ଫଳ
କାହିଁ ସପନ ସୁଖ ?

ତରୁଣୀ ଆଜ          କିଶୋରୀଙ୍କର
ନାଚ କୁହାର ବାଜ
ମନଟା ମୋର          କରିଲା ଚୂନା
ନାହିଁ ରେ ବାଟ ଆଜ ।

ଦେଖିଲି ନଦେ          କେତେ ତରୁଣୀ
ଜମାଇଛନ୍ତି ଭିଡ଼,
କିଶୋରୀଙ୍କର          ବସିଛି ସଭା
ରସର ରଣ ମାଡ଼ ।

ବୋଇଡ ବଡ଼ା          ଘୁଙ୍ଗୁ କେ ଆସି
କହାଏ ସେ ମୋରେ,

ଚୁମ୍ବନ ଦେ          ଦଈଲ୍ ଅସି
ମୋ ଓଠେ ବଳାତ୍କାରେ ।
ସବୁର ଅଙ୍ଗ          ଦେଖିଲି ମୁଁ ଯେ
ଢୋଇଚ ଅସି ଭଗ୍ର
ରଙ୍ଗା ଅଜ୍          ଗୋଲମ ମଧ୍ୟେ
ଅତୁଳ ତାର ଶୋଭା—
ସବୁରିଠାରୁ          ସୁନ୍ଦରୀ ସେ
ପୃଥୁଳ ଘନମାଂସ
ମନ୍ଦହାସୀ          ସମବୟସୀ
ଇସ୍କାପାନ ବିବି ।
ଦ'ବାହୁ ଟେକି          କହିଲା "ସଖୀ
କପଟ ତମ ଭାବ,
ଟିକିଏ ଆଗୁ          ଆସିଥିଲେ ତ
ନ ଥାନ୍ତି ଖେଳେ ହାରି ।"

---

# ଅଂଧାର ଘର ଆଲୁଅ କର

ଅଂଧାର ଘର ଉଜାଲା କର ମୋ
ଲକ୍ଷ ଦହୁଡ଼, ଦୀପ ଜାଳି
କେ ଅସିଲ ଆଗୋ ? ଗୃହିଁ ଦେଖେ ଏ ଯେ
ଆଉ କେହି ନୁହଁ, ସାନ ଶାଳୀ ।

କଲେଜ କମାଇ କର ଧାସ୍ର ଦନ,
ଦନ ଭର କର ହରତାଳ,
ସହର ତମାମ ଘଣ୍ଟୁଅର ନେଇ
ଏଇ ଫେର ନଗାଚ୍ଛେ ଶ୍ରମଶାଳ ।

ଟାଉନ୍ ହଲେ ସେ ଦେଇଚ ଭାଷଣ—
ନାରୀର ମୌଳ ଅଧିକାର
ପୁରୁଷଗୁଡ଼ାକ କଲେ କାହିଁ ଲୁଟି,
ପରୀକ୍ଷା ଦୁଷ୍ଟ ଏଇବାର ।

ଯୁନିଭରସିଟି କୁଳପତି ଆଉ
ଅମଲା କରମୀ ପୁଂଲିଙ୍ଗ;
ନାରୀର ବେଦନା କାହୁଁ ସେ ବୁଝିବେ ?
ନେଣ୍ଟୁ ଅଜ୍ଞ ସବୁ ବାମ ଅଙ୍ଗ

ହରତାଳ କର ଦାବୀ କରିଚନ୍ତି
କୁଳପତ୍ନୀ ହେଉ ନାରୀ ଜଣେ,
ମହିଳା କଲେଜେ ପରୀକ୍ଷା ନୋହୁ
ସ୍ଥବୀଏ ପାନ୍ତୁ ପ୍ରମୋଶନେ ।

ବନ୍ଧୁ ବଡ଼ ବଡ଼ କଥା କହୁ ସେ ତ
ଘରକୁ ଫେରନ୍ତି ଏଇକ୍ଷଣେ,
ପଞ୍ଚରଲ୍ ଗୁଣ୍ଡା ଥିବା ସରକାର
କସ ଲୋଡ଼ା କଷ୍ଟ ବ୍ୟଥା ଜାଗେ ।
ଗର୍ଜି କହନ୍ତି ଶାଳକାପ୍ରବର
ଲୋଡ଼ା ନାଇ ଗୁ’, ସରକାର,
ନାଗିର ରାଇଜ କାଏମ୍ କରିବୁଁ,
କାଏମ କରିବୁ ଅଲବତ ।
ବଡ଼ ଶୋଷ ଅଣ୍, ଗୁଣ୍ଡରାଣି କାହିଁ
ଗିଲାସେ ଆଗ ତୁ ଥଣ୍ଡା ପାଣି,
ପଚ୍ଛେ ଯୋଉ କଥା, ଲେଖିବାକୁ ହେବ
ଇମ୍ପ୍ଲେଣ୍ଟ୍ ପୁଣି ଏଇକ୍ଷଣି ।
ପ୍ରେସ୍‌କୁ ଖବର ହୋଇ ନାଇ ଦିଅ
ଏ. ପି. କୁ ଯାଏଁ ଫୋନ୍ କରେ,
ସବୁ କାଗଜ ତ ନରଙ୍କ ଦଖଲ,
ଦେଖା ଯାଉ କିଏ ଛାପି ପାରେ ?
କହି ମୁଁ ଚହଲି, ବସ ଆଗ ଟିକେ
(ତମ) ଗଣିତ ଖାତାରେ କରେଁ ପଂଖା,
କ୍ଲାନ୍ତ ତ ବଡ଼, ଝାଁଜିଳା ପଡ଼ିଛ
ସୁନ୍ଦର ମୁହଁ ସୁଧାମଖା ।

ଶାଳକା କହନ୍ତେ, ରଙ୍ଗ ପ୍ରହସନ,
ଏଇ ସବୁ ଗୁଣ୍ଡୁବାଣୀ ଭାଷି

ଖାଇଚ ନାସ୍ତିର ମୁଣ୍ଡଟା ତମେ,
ବୁଝିଲଣି ସବୁ ଅଙ୍କ କଷି ।
ଏଥର ଅଭ ଏ କଅଁଳ କଥାରେ
ଯାଉ ନାହୁଁ ଆମେ ଭୁଲ୍ କମା,
ରହୁ ଥା ଦେଖିବ ନର ନୂହେ, ନାସ୍ତି
ହେବ ଏ ଯୁଗର ଶିରୋନାମା ।

ଚଟି ଚମଡାଇ ଗୁଲ୍‌ଗଲ୍ପ ଉଠି,
ମୁହେଁ ମୋ ବୋଳି କି ଚୂନକାଳି
ଅଂଧାର ଘର ଉଜାଳି କରୁ ମୋ
ଆସିଥିଲ ଅଜ ସାନ ଶାଳୀ ! !

---

# ଦେବ ସଭା

( ବଜେଟ୍ ବୈଠକ )

ଦ୍ୱିତଳ କଲେଜ ହ'ଲେ  ଅମରାବତୀ ନଗରେ
ବସିଅଛି ଦେବସଭା, ଦେଖ ସଙ୍ଗାତ !
ମନ୍ତ୍ରୀ-ଦନ୍ତ୍ରୀ ଓ ଯନ୍ତ୍ରୀ  ଉପମନ୍ତ୍ରୀ-ଦଳ ନିଦନ୍ତ୍ରୀ
ଚେଲା ସାଙ୍ଗେ ମିଶା ଅବା ସର୍ ନବାବ,
କା ଦେବେ ଟେଣ୍ଡ଼ କନା  ଅଧମ ତାରଣ ବାନା,
ଶୁଦ୍ଧ ଖଦୀ ଖୋଳେ ଟଙ୍କା ଅହିଂସ ପେଟ,
ମୁଣ୍ଡେ ତାର ଗାନ୍ଧିଟୋପି  କିଏ ପୁଣି ବହୁରୂପୀ
ପିନ୍ଧିଅଛି ଏକ ଲମ୍ବା ଜହର କୋଟ ।

କିଏ ଠାଣେ ସ୍ୱରାଜ୍ୟ ବଡ଼ୁ
ଶୁଁଘି କେ ଆଜାଦ୍ ନାସ  ଛିଙ୍କି ହୁଏ ଅଣଶ୍ୱାସ
ଘଇ ନଦେ ଦେଖ ହୁଏ କେ ଭଡ଼ଘୋଡ଼ ।
ଅପସରା, ଚାରଣ, ଭାଟ
ସଭାବେଦୀ ବେଢ଼ା ଘେର  ଗାଉଛନ୍ତି ଘୋଡ଼ ସୁରେ
ନାନା ରୂପେ ଜୟ ଧ୍ୱନି, କରି ପେଟ ନାଟ ।
(ଘୋଡ଼ କୁଦାଟ !)

ସମ୍ମୁଖ ଚତ୍ୱର ପର  ଜଗ ବାଚସ୍ପତିବର
ସୁରକୁଳ ଗୁରୁ, ବୃହସ୍ପତି ପ୍ରବର,

ତହିଁ ଯୁଝିଣ ନାନା କଥା, ନାନା ତତ୍ତ୍ୱ [illegible] ଗାଥା
ସାରା ବ୍ରହ୍ମାଣ୍ଡର ତତ୍ତ୍ୱ ହୁଏ ବାହାର ।
ବହୁ ତଥ୍ୟ ଅଙ୍କ କଷି ଗ୍ଲାସ୍ ଦାନ୍ତ ଗଲା ଖସି
ଘୋଷାଇ ଘୋଷାଇ ଶାସ୍ତ୍ର, ପୋଥି ବା ପୋଷି,
ତେଣୁ ଜଡ଼ ପାଲଟି ସେ ବସିଛନ୍ତି ମହାହ୍ଲାସେ
ବେଳେ ବେଳେ ପଦେ ଅଧେ ଦଅନ୍ତି କାଶି ।

ତାଙ୍କ ଆଗେ ଦେଖ ବଳେ ମହାତାପୀ ଦେବସଙ୍ଗେ
ଆଉ କେହି ନୁହଁ ନକେ, ସ୍ୱୟଂ ଶଙ୍କରେ,
ସ୍ଥୂଳ ବପୁର ଭାରେ ଶୀର୍ଣ୍ଣ କାଷ୍ଠାସନ ଥରେ
ବଞ୍ଚୁଛନ୍ତି ପାର୍ଶ୍ୱରେ ସୁନା ଗୃମନେ ।
ଦେହେ ଗମ ଗମ ହାଲ ଦମ ଦମ ପଦ ଭାର,
ହମ ହମ ଭାବ ତାଙ୍କ ଉଚ୍ଛୁଳେ ମୁହେଁ,
ଫୁଲୁକା ଲଟ ସଦୃଶ ଗାଲ ଦୁଇଦଶେ ଲୁଣ,
ଏକ ମହା ଜଙ୍ଗୀ ମୁଣ୍ଡା ଶୋଭୁଛି ଦେହେ ।
ବହୁ ରଣ କରି କ୍ଲାନ୍ତ, ବଣୁଆ ଉଜାଙ୍କ ଦାନ୍ତ
ଭାଙ୍ଗିଛନ୍ତି କହୁଛନ୍ତି ଲଟେଇ କରି,
ସାମ୍ୟବାଦୀ ଖାଣ୍ଡବରେ ଦହୁଛନ୍ତି କୋପାନଳେ
ତାକରଡ଼ା, ହରିକୁଦେ ଅଗଣ୍ଡ ଦଳ ।
ଉଡ଼ାଇଲେ ଜୟ ବାନା ମହାବାହୁ ମହାମନା
ତେଣୁ ତାଙ୍କୁ ସାଜେ ସିନା ଏପା ପୋଷାକ,
ଭାଟ ତାଙ୍କ ସ୍ତବ କରେ, ଭୋଟରଙ୍ଗ ଲୀଳା ସ୍ୱରେ,
ତାଙ୍କୁ ପାଇ ଧନ୍ୟ ହେଲା ଏ ନାକ-ଲୋକ ।

ବହୁ ତପ ସେବ କରି　　　　ଦଇତ୍ୟ ଦୁର୍ଗେ ହରି
ସ୍ଥୂଳ ଶରୀର ଭାର ହୋଇଲା କ୍ଷୀଣ,
ଅକାଳ ହେଲେ ହେବେ　　ବେଶୀ ଉଣା, ଟିକେ ଲବେ
ଭୋଜନରେ ବେଶୀ ନୁହେଁ, ସାଞ୍ଜ ମହାଣ ।
ପାଦ ଜରଜର ତେଲେ　　କେତେ କଏ ବଣା ସେଲେ
କ୍ଷୁଧାକୁ କାହାକୁ କେତେ କରିବେ ମନା,
ହର ହର ବମ୍ ବମ୍　　ଓଁମ୍ ହର ହର ନାମ
ତାଙ୍କ ପାଖେ ବରଜନ୍ତ କଏ ସେ ଅନା।
ନଦୀଆର ନିତାଇ ଗୃନ୍ଦ,
ଢଳ ଢଳ ନାଚେ ଗୋରା　　ତନୁ ଶିରୀ ମନଚୋରା
ଧରା ଛାଡ଼ ସ୍ୱର୍ଗେ ପ୍ରଭୁ ପାତିଲେ ଫାନ୍ଦ ।
ସଂକୀର୍ତ୍ତନ ରସେ ଅମରା
ଅମଳ-କମଳ କୂଳେ　　ତାରିବା ପାଇଁ ବ୍ୟାକୁଳେ
ଦେବଦଳେକୁ ବେଳେ ଦେଲେ ଦାନ୍ତ ଡାକରା ।

ତାଙ୍କ ପରେ କେ ବସିଜ ?　　ତୁ ସେ କଇଳାସ ରାଜା
ସାକ୍ଷାତରେ ଭୋଲାନାଥ, ଧୂର୍ଜଟି, ହର
ପିଙ୍ଗଳ ନୟନ କୋଷ　　ସେବ ଧାତୁରାର ରସ
ଘୁଇ ନିଦେ ଲାଗି ଆସେ ନୟନ ତଳ ।
ଫାଇଲ ଶୋଭିତ କର　　ଅନ୍ୟ ହାତରେ ତ୍ରିଶୂଳ
ଜଟାଜାଳ ଛେଦ ଅଛୁ ତୁ କଳ-ଖୁରେ,
"କଳିଙ୍ଗ"ର ଶେଷ ଦୁଇ　　ସେନାପାଳ ଅଟୁ ତୁହି
ଯୋଗ ସାଧୁ ସଦା ମଡ଼ା ଶ୍ମଶାନ ପୁରେ ।

କଟକର ହାସପାତାଲ          ବକସ୍ରା ଓ ଶବାଗାର
ସବୁ ତୋର ସେବ ପ୍ରଭୁ, ସ୍ମରଣ ଭୂଇଁ,
ଶିକ୍ଷା, ଦୀକ୍ଷା, ମହାମନ୍ତ୍ର          ଜପ, ତପ, ଯୋଗ ସୂତ୍ର
ତୋତେ ଅଟେଶ ଏସବୁର ଦେବତା ତୁଇ ।
ଧନ୍ୟ ଧନ୍ୟ ତୁ ଭୂତନାଥ
ତୋ ନାମେ ପଳାଏ ଭୂତ          ଭସ୍ମେ ହୋଇ ଗୁହ୍ୟମୁତ
ତ୍ରିଭୁବନ ତ୍ରାଣକର୍ତ୍ତା ତୁହ ହେ ତାତ !!

ତାଙ୍କ ପରେ ତରଦର          ବସିଛନ୍ତି ବାଗ୍ମୀବର
ସୁରଲୋକେ ପରା ଇଏ ଗାଆଣି ପଣ୍ଡା,
ପୋଷିତ ଘୋଡ଼ସବାର,          ଚଢ଼ିବାରେ ସାଇକେଲ,
ଧୁରନ୍ଧର ଭାଙ୍ଗିଛନ୍ତି ଗଣ୍ଡାକୁ ଗଣ୍ଡା ।
କଳାକୁ କରିବା ଧଳା          ବ୍ରତ ଏହାଙ୍କର ପରା
ଡାକବାଜି ଯନ୍ତ୍ରମାନ ଥାଏ ସାଙ୍ଗରେ,
ସତ୍ୟ ଛଡ଼ା ଅନ୍ୟ କିଛି          ଶୁଣିଲେ କରନ୍ତି ଛି, ଛି,
ସତ୍ୟସମାଗ୍ରୁରମାନ ରଣ ପ୍ରଗ୍ରୁରେ ।

ଏଇପରି ଦେବଦେବୀ-          ମାନ ଛନ୍ତି ହୋଇ ଉଭା
ତାଙ୍କ ପଛେ ସଭ୍ୟଗଣ କହିବା କେତେ,
ଏଙ୍କୁ ଆନ ଯେ ବଳେ          ରୂପ, ଗୁଣ, ବକ୍ତୃତାରେ
ଜ୍ଞାନ, ବିଦ୍ୟା ଅର୍ଜିଛନ୍ତି ସେମାନେ ଯେତେ
ତୁଳନା ତାର ବା କାହିଁ          ଅସିଛନ୍ତି ଭୋଟ ପାଇଁ
ତ୍ରିଭୁବନ ରତ୍ନରାଜ, ଅକର୍ମା ଶିଳା,

ପ୍ରଭୁ ପାଦ ପଦ୍ମ ବାଜ        ଅହୋ ଏ କ ଭୋଜବାଜ !
ପଥର ପାଲଟି ଗଲା ପୁଣି ଅହଲ୍ୟା ! !
ବେଳେ ବେଳେ ବାଧା ପାଇ    ଲାଗିଯାଏ ଠେଲା ପେଲା
କିଏ କେତେ ମୋଡ଼ି ପାରେ ପ୍ରଭୁଙ୍କ ପାଦ,
ସେଇଟି ସକଳ ତୀର୍ଥ,        ସବୁ ପୁଣ୍ୟ, ସବୁ ବ୍ରତ,
ଆଉ ସବୁ କଥା ପଛେ ସଡ଼ୁ ଯେ ବାଦ ।
ଜଣେ ଜଣେ ବଜେ ପ୍ରତିମା,
ତଥାପି ସେ ଗୃଲେ ବୁଲେ   ଭଡ଼ା ନିଏ, କଥା ବୋଲେ,
ବେଳେ ବେଳେ ଝାଡ଼ି ଦିଏ ଏକ ବକ୍ତୃତା ! ! !

ସଭ୍ୟଙ୍କର ଜ୍ଞାନ, ଗୁଣ,        ନାହିଁ ତା ଉଦାହରଣ,
ତଥାପି ନମୁନା ଦେବା ଏଠାରେ ଏକ,
ନ ଦେଖିବ ଦୋଷ ଗୁଣ        ଅଟନ୍ତି ପୂଜ୍ୟ ସଭାଜନ
ରସିକତା ଦେନ ଖାଲି ଶହେ ସ୍ଲୋକ ।
କମ୍ୟୁନିଷ୍ଟ ସାମ୍ୟବାଦୀ        ବିଧର୍ମୀ, ବିରୋଧୀ ଆଦି
ଖୋଜି ତାଙ୍କ ଅନ୍ଧ କନ୍ଧ, ଦୋବାଟା ଗାଳି,
ସଭ୍ୟଙ୍କର ବଡ଼ ଗୁଣ        ଶଳକ ଅଥବା ଜାଣ,
ସେଇଥିରୁ ମୂଲ୍ୟ ତାଙ୍କ ବଢ଼ୁଛି ଭାରି ।

ଦିନେ ବୈକୁଣ୍ଠ ବୈଠକ        ଆରମ୍ଭରୁ ସଭ୍ୟ ଏକ
କହିଲେ—ଭୋ ସଭାପତି ! ପ୍ରସ୍ତାବ ମୋର
ଆମ୍ଭ ସହରରେ ଏଥ୍ର        ଗୁରଣ' ପୂଲ୍ରଣ ଆଉ,
ଭୂତ ପ୍ରେତ ଅସୁରଙ୍କ ଦାଉ ଅକଳ ।

ଶୁଣିଲି ମୁଁ ଗଛ ଅଧେ ଗୃହକୁଣ୍ଡା ଗଛର ଅଗେ
ବସିଥିଲା ସେ—ଗଳାରେ ଗୋଟାଏ ଭୂତ,
ଆମ୍ଭ ଗୁହଳ କଳର ଶମିଣିଠୁ ଭଇତର,
ଟେଙ୍ଗାରେ ହୋଇବ ଆସି ବାଆନ ହାତ ।

ଖୋଦ୍ ମୋର ଶାଳାଙ୍କର ସାନ ନଣନ୍ଦ ଦଅର
କନ୍‌ଟ୍ରୋଲ ଅଫିସେ ପସି ସେ ଟାଇପିଷ୍ଟ୍
ଦେଖି ସେଇ ଭୂତଟାକୁ ଚିହ୍ନଟ କଲା ସେ ତାକୁ
ହୋଇପାରେ ତାହା ଏକ କମିଉନିଷ୍ଟ ।

ଏକଥା ମହିଳା ସଭ୍ୟା ଶୁଣି ଭାଷଣିଲେ ଦିବ୍ୟା
ପୁରୁଷଙ୍କ କଥା ଖାଲି ପୁରୁଷ ଜାଣେ,
ନାରୀ ପୁଲିଶିଣି କଥା ଘାରୁ ନାଇ କାହା ମଥା
ମାଈ ଭୂତେ କେ କରିବ ଜବତ ଶୁଣେ ?
ମାଙ୍କଡ଼ ମାରିବା ବିଲ୍ ପାଶ୍ ହେବା ଦିନ ପୁଣି
ଏଇପରି ଅଦହେଲା ମାଇପି ପ୍ରେତ
ଦେଖାଇଲ ଭୂତେମାନେ ଭୁଲି ମୁଁ ପାରିନ ମନେ
ଅଣ୍ଡିରି ମାଙ୍କଡ଼ ମୁଣ୍ଡ ପିନ୍ଧିକେ ଅତ—
କମ୍ଟର ଦୁଇଟା ଟଙ୍କା ପୁରସ୍କାର ହେଲା ଲେଖା
ମାଈ ବାନରୀ ବଧିଲେ ଯିବ ସେ ଫାଙ୍କା,
ନାରୀ ପୁରୁଷ ମଧ୍ୟରେ ଭେଦ ରଚ ଆଇନ୍‌ରେ
ନାରୀ ଜାତି ପ୍ରତିଶୋଧ ନବତି ଏକା ! !
ନିଦରୁ ଉଠି ସତ୍ୱର ସଭ୍ୟ ବିରୋଧୀ ଦଳର
ଛିଡ଼ା ହୋଇ ମହାବାହୁ ଉଠିଲେ କହି

ରାବଣ ଓଡ଼ିଆ ଥିଲା          ଏକଥା ମୁଁ ଥିଲି କହି
ଦୁଇବର୍ଷ ଆଗେ ଦେଖେ ମନେ କି ନାଇ ?
ଛାର ଜାତି, ଅଣଜାତି,          ଅସୁର, ଭୂତଙ୍କ ଜାତି
ଏ ଦେଶରେ ଥିବା କସ ବଚନ ଆଗର
ମୋ କଥାକୁ ମିଛ ବୋଲି          ହସିଥିଲ ସବେ ମିଳି
ହୋମପାଥି ସମ୍ମିଳନୀ ମଣ୍ଡପ ପରେ !!
ସଙ୍ଗେ ସଙ୍ଗେ କରତାଳି          ବାଜିଲା ଅଗଣନ ବଳି,
ହୋଇଗଲା ବଜେଟ୍‌ରେ ସେଦିନ ଖର୍ଚ୍ଚା,
ପୁଲିଶ ଶାସନ ପାଇଁ          ଠଙ୍କା ଲକ୍ଷେ, ବେଶୀ କାହିଁ
ନଗ୍ନପନ୍ଥୀ ନାଚ ଉପରେ ବିଶାଳ ଚର୍ଚ୍ଚା ।
ଏଇପରି ସ୍ୱର୍ଗ ଦେଶେ          ଦେବସଭା ନିତି ବସେ,
ଦେବତାଏ ସେଠି ବସି ମଣିଷ ଭାଗ୍ୟ
ତିଆରନ୍ତି ନିଜ ହାତେ          ଭାଙ୍ଗି ଦିଅନ୍ତି ପୁଣି କେତେ
ସେମାନେ ଯେ ଭାଗ୍ୟକର୍ତ୍ତା ମଣିଷ ଭାଗ୍ୟ !!

ଏଇପରି ଗୋଟିକ କଥା
ଷାଠିଏ ମୁହଁରେ ଶୁଣେ,          କରଦାତା ଏଣେ ଭାବେ
ଶୁଣା ହେଲା ଗୁହାରି ତା, ପ୍ରାଣ-ବାରତା । *

---

* 'ଡଗର'ର ଗତବର୍ଷ ହୋଲି ସଂଖ୍ୟାରେ ପ୍ରକାଶିତ ହୋଇଥିଲା

# ଶିଶୁରାଷ୍ଟ୍ର ବନ୍ଦନା

ଜୟ ତୁ ରାଷ୍ଟ୍ର-ଶିଶୁ !
ପ୍ରଶଂସା ତୋର ଭାରତଠୁ ବେଶୀ
ଶୁଣେ ମାର୍କିନ୍ ଦେଶ ।
ଜୟ ତୁ ସିଂହ ଶିଶୁ ! !

ଜନ୍ମ ହେଉ ହେଉ ପିତାକୁ ଖାଇଲୁ
ବଢ଼ିଲୁ ପିଉସୀ ଘରେ,
ଏ ମନ୍ଦ ବେଳରେ ପିଉସୀ ତୋ' କାନେ
ଫୁଙ୍କଇ ତୋ ନାମେ ମନ୍ତ୍ରେ ।
ପ୍ରଥମ ବରଷେ କାଶ୍ମିର୍ ରଣେ
କେତେ ତୁ ମାଡ଼ିଲୁ ଡିଆଁ
କେତେ ପାଣି ପୁଣି ତୋଫାନ କଣିଲୁ
କେତେ ତୁ ଗିଳିଲୁ ନିଆଁ ।
ରେ ଶିଶୁ !
ଦ୍ୱିତୀୟ ବରଷେ ନାଶି ରଜାକରେ
ଜିଣିଲୁ ନିଜାମ ଦେଶ,
ବୀର ତେଲଙ୍ଗାନା ଗଳାକୁ ଚିପିଲୁ
ପିନ୍ଧ ତୁ ଗେରୁଆ ବେଶ ।
ରେ ଶିଶୁ!
ଜୟ ତୋର ଦେଶୁ ଦେଶ ।

ଧନ୍ୟ ତୁ ବୀର ଶିଶୁ
ଟିକକ କଥାରେ ଅଖିକ ଉଗ୍ରନ୍ତି
ମାରିବା ପାଇଁକ ମିଶୁ ।
କଥା କଥାକରେ ଦାଗି ଦଉ ନଳୀ,
ଚଳାଉ କମାଣ, କଳ ।
ରେ ଶିଶୁ !
କଲିକତା ଆଉ ଶେରଗଡ଼େ କାହିଁ
ବାହିଲୁ ଉକଡ ଜଳ ।
ନାଗ୍ରି ଶିଶୁ ନାଷ୍ଟ ବୋଲାଇଲୁ ବୀର
କମାଇଲୁ ନାମ ବାବା,
ଦୁଇ ବରଷିଆ ପିଲା କାଣ୍ଡ ଦେଖି
ପୃଥ୍ୱୀ ହେଲା ଅବା କାବା,
ରେ ଶିଶୁ !
ଧନୀ ଜମୀଦାରେ ଘଣ୍ଟା ଘୋଡ଼ାଇ
ରଖିଲୁ ତୁ ଏତେ ଧନ,
ରଜାଙ୍କ ଗାଇଜ ନେଇ ଦେଲୁ ତାଙ୍କୁ
ଭତ୍ତା, ଜମି, ପେନ୍‌ସନ୍ ।
ରେ ଶିଶୁ !
ଜୟ ତୋର ଦେଶୁ ଦେଶୁ ।
ଭଲ କଥା ଶୁଣି ଭାଲିଆ ଲାଗୁଛ
ମାରିବାକୁ ମତେ ମିଶୁ ।
ରେ ଶିଶୁ !
ସ୍ୱେଚ୍ଛା ବନ୍ଧାଷଣ, ମାର୍ଯ୍ୟାଚ ଦଳଙ୍କୁ
ଖେଂଜାଲୁ ମାମୁଦର,

ପଞ୍ଚମ ସେନା ନାମ ତୋର ଶୁଣି
ଭୋଗିଲେଣି ଭାଲ୍‌ଜର ।
ନିଜ ଦେଶକୁ ସେ ଅନ୍ୟର ହାତେ
କାଲେ ଅବା ଦେବେ ଟେକି—!
କାଣ୍ଡିଆ ଖଂଙ୍କ ଧରିଲୁ ଖଂଜରେ
ଯେତେକ 'ମନାଇ' 'ଶିଙ୍ଗ' ।
'ବର୍ଗବାଦୀ'ଙ୍କ ବର୍ଗୀ ବେଭାର
ଆତଙ୍କ କଲୁ ନାଶ,
କଟିନୁ କଟିନ— ଡର ହୋଇ ଆସେ
ତୋ' ହାତର ନାଗପାଶ ।
ରେ ଶିଶୁ !
ଗୃଷୀ ମୂଲିଆଙ୍କୁ କଲୁ ତୁ ଜବତ
ଖଂଙ୍କାଲୁ ଆଇନ କଲ,
ବଡ଼ ବଡ଼ଆଙ୍କ କର ତୁ କମାଇ
(ତାଙ୍କ) କମରରେ ଦେଲୁ ବଲ ।

କଳା ବଜାରୀଙ୍କୁ ଦେଲୁ ହସ୍ତେ
ଜନମତ ଥର ହର,
ଜେଲ୍‌ଖାନା ସବୁ ଦୁଇଠା ରରପେ
ହେଲାଣି ତ ଭର ପୂର,
ରେ ଶିଶୁ !

ଧନ୍ୟ ତୁ ବୀର-ଶିଶୁ
ଜୟର ନିଶାଣ ଦେଶରେ ଉଡ଼ାଇ
ଯାହା ତୋ ଦେଶୁ ଦେଶୁ ।

ପୂରୁବ ଜନମେ    ହୋଇ ମେଘନାଦ
ଜନମ ବା ଥିଲୁ ହୋଇ,
ରେ ଶିଶୁ !
ଭୂଇଁରେ ନ ପଡ଼    ମେଘ ପର ରଡ଼
ଛାଡ଼ଦେଲୁ ଏକ ତୁହ !

ମହୀରାବଣର    ପୁଅ ଅବା ତୁରେ
ଓଳଅରୁ ହେଲୁ ଗଜା,
ଭୂଇଁରେ ନ ପଡ଼ୁଁ    ମାଲକଛ ଭିଡ଼ୁ,
ନାହ୍ମି-ନାଡ଼େ ଖଂଡାପଳା ।
ରେ ପିଲା !
ନର ଦାନବ ଜଣା ନ ଗଲା !

ଅବା ହନୁମାନ    ହୋଇ ତୁ ଜନମ
ଧରଣୀରେ ହୋଇଥିଲୁ—
ଜନମ ନ ହେଉଁ    ସୂର୍ଯ୍ୟକୁ ଖାଇ
ଦବା ପାଇଁ ଧାଇଁ ଗଲୁ—
ଖସି ପଡ଼ ଫାଳେ    ଗାଲ ଗଲା ଭଡ଼,
ଲାଞ୍ଜଟା ଗଲା ବଂକ,
ଏ ଜନମେ ବାବୁ    ନ କର ସେପର
ହୁଅରେ ତୁ ସୁନା ପଣୀ,
ରେ ଶିଶୁ !
(ଶିଖ) ତୋ ପିତାର ଉପଦେଶୁ ।
ରେ ଶିଶୁ,

ଦୈତ୍ୟ ଜନମିବ ଋଷି-ବଂଶୁ ?
ରେ ଶିଶୁ !

ବଡ଼ ହେଲେ ତୁଇ                    ପଢ଼ିବୁରେ ପାଠ
ଶିଖିବୁଟି ଇତିହାସ,
ରେ ଶିଶୁ !
ଜାଣିବୁ ବିଶାଳ                    ଜନତାକୁ କେହି
ପାର ନାଇ କର ଦାସ,
ରେ ଶିଶୁ !
ଜାଣିବୁ କପଟ                    ଅଧେ ପୃଥ୍ୱୀ ଜାଳି
ଜନତାର ଅସଂତୋଷ—
ରେ ଶିଶୁ,
ନୂଆ ଇମାରତ                    ଦେଶେ ଦେଶେ ଗଢ଼ି
ଜାର୍, ଶଆଁ ପାଏ ଧ୍ୱଂସ,
ରେ ଶିଶୁ !
କଥାଏ କଥାଏ                    ଦେଇ ତୋର ହାତ
ଗୁଲଶ ଦମନ ଆଜ,
ରେ ଶିଶୁ !
କିନ୍ତୁ କେତେ ଦିନ                    କିଏ ସେ ସହିବ
ବନ୍ଧୁକ୍କ ରେ ନାଜୀ ?
ରେ ଶିଶୁ,
ଶିଖ, ତୋ ପିତାର ଆଦରଶୁ ।
ରେ ଶିଶୁ !

ଦୈତ୍ୟ ଜନମିବ ଋଷି-ବଂଶ ?
ରେ ଶିଶୁ !
'ମାରନା' 'ମାରନା' ମୁହେଁ ମୁହେଁ ଭାଷି
ଅରଣା ମହିଁଷି ପରି,
ଯାକୁ ତାକୁ ଅରେ ଗୋଡ଼ାଇ ମାରୁଚୁ
ନାହୁଁଚୁ ଅହିଂସା ଗୁଳ,

ରେ ବାଳ !
ଶେଷେ, ହେବୁ କି ତୁ କୁଳାଙ୍ଗାର ?
ରେ ବାଳ,
ଛନ୍ଦ କପଟେର ପନ୍ଧିଦାର ।
ରେ ବାଳ !

ଭତୁଆଣି ଦନୁ ହେଲଣି ଏପରି
ଭାଙ୍ଗିନ ଘ ଦୁଧଗାଲ ।
ରେ ବାଳ !!
ଆଜହୁଁ ତ ଏଡ଼େ, ଅଛୁ ବେଳ କାଳ,
ପିଲାରୁ ତୁ ଭତୁକଲ,
ଭଲ ନୁହେ ବାବୁ କଥା ମାନ ମୋର,
ବିଷମ ଏ କାଳ ବେଳ,
ରେ ବାବୁ,
ପଛେ ହେବୁ ସିନା ଅବୁ କାବୁ ।
ରେ ବାବୁ ।

ଡାକେ ଠାକୁରଙ୍କୁ                    ହେଉ ସନମତ,
( ଯେହେତୁ ) ଶିଅ ଁ ଦଶା ନ ଭଜିବୁ ।
ରେ ବାବୁ !

ଚଗଲା ପିଲାଙ୍କ                    ସାଥୀ ତୁ ନ ହୁଅ
ଖେଳେ ଯେ ତୋମାର ଖେଳ,
( ଖୁଣୀ ପରମାଣୁ ତୋମା ଖେଳ, )
ଭଲ ପିଲା ବାଛୁ                    କର ସାଙ୍ଗ ସାଥୀ
ଏଇ ତ ଶିଖିବା ବେଳ ।
ରେ ବାବୁ !
ଶିରେ ଶୋଭୁ ତୋ କନକ-ତାଜ୍ ।
ରେ ବାବୁ !

ଦେଶେ ଦେଶେ ଆଜ                    କାଏମ କର ତୁ
ଜନତାର ସ୍ୱମରାଜ୍ ।
ଶେଷେ, ନୋହିଲେ ପାଇବୁ ଲାଜ ।
ରେ ବାବୁ !

ଶୁଣ, ଶୁଣ ତୁ ସ୍ୱର୍ଗ-ଶିଶୁ
ଆଶିଷ ଦିଏ ମୁଁ                    ଶିରେ ତୋର ବଞ୍ଚ
ତୋର ଏ ଜନମ-ଦେଶୁ,
ରେ ଶିଶୁ ।

ଧର୍ମର ବଳେ                    ହୁଅ ବଳୀଆର
ଜଗାଅ ମଣିଷେ ଆଜ,
କୋଟି ଜନତାର                    ଶିର ପରେ ଦିଅ
ସୁନାର ମୁକୁଟ ସାଜ ।

ଜାତି, ନୀତି ଭେଦ ଦୂର କରୁ, ବାଦ
ଗାଅ ତୁ ସାମ୍ୟ—ଗୀତା,
ଦେଶେ ଦେଶେ ଅଙ୍କା ଶୁଣାଅ ତୁ ଡାକ
ମଣିଷର ସନ୍ମତା
ରେ ଶିଶୁ !
ଜୟ ତୋର ଦେଶୁ ଦେଶୁ ।

# ଚୋର ଓ ଡକେଇତ ଉପାଖ୍ୟାନ

ଚୋର କହେ ଶୁଣ ଡକେଇତ ଭାଇ !
ତମେ ସବୁ ବଡ଼ ମନ୍ଦ,
ମଣିଷକୁ ଲହୁ ଲୁହାଣ କରି ଯେ
ଲଭୁଚ ପରମାନନ୍ଦ ।

ଧନ ଆଲୁଅରେ ବ୍ୟାଙ୍କ୍ ପିଅନ୍
ଗଳାରେ ବସାଇ ଛୁରି,
ଲୁଟିଅଛ ତୁମେ ହଜାର, ହଜାର
ପ୍ରମାଣ ତା' ଭୂରି ଭୂରି ।

କାହିଁ ଡାକଘର ଉପରେ ଚଢ଼ାଉ,
କାହିଁ ବା ଲାଇନ୍ ଛାଡ଼,
ହାତବୋମା ଆଉ ଏସିଡ୍ ଫୋପାଡ଼ି
କର ସବୁ ସାବାଡ଼ ।

ନିରୀହ ମଣିଷ ଜଖମ କରି କି
ବାହାଦୁରୀ ଅବା ଲୁଟ
ଚୋରୀ ପିସ୍ତଲ, ବନ୍ଧୁକ ଧରି
ରଚୁଚ ସଂହାର ନାଟ ! !

ଚଉକିଆ, ଥାନା ସିପାହୀଙ୍କି ଖାଲି
ମାରି ପଉରୁଷ ଦେଖା—

ବୀର ବେଶେ ହସେ ଦସ୍ୟୁ ଏ ଦେଶେ
ବର୍ଗୀ ଶହ୍ମିଦେ ଲେଖା !

ଡକେଇତ କହେ ଶୁଣ ଚୋର ଭାଇ
ହେଲେ ହେଲୁଁ ଆମେ ଭେଲ—
ଆତ୍ମ-ପରୀକ୍ଷା କରି ଥରେ ଦେଖ
ତେମେ ସବୁ କୋଉ ଭଲ ?

ଷୋରିଷର ତେଲେ ତମେ ଯେ ମିଶାଅ
ଅବାଧେ 'ଶିଆଳ କାଁଟା',
କରତର ଗୁଁଡ଼ି ମିଶେଇ ବିକୁଚ
ବଜାରେ ଖାଣ୍ଟି ଅଟା ।

ଫୁଲ୍‌ଖଡ଼ି ଆଉ ପଥର ଚୂନାରେ
ମଇଦା ମିଶାଇ ହେଲେ
କୋଟି କୋଟି ତୁମେ ଫାଇଦା କରୁଚ
ସକାଳ ସୂର୍ଯ୍ୟ ଉଠଲେ ।

କଳା ବଜାରରେ କଳା ପୋନ୍ଥ ପୋତ
ମଶାଣି କଲଣି ଦେଶ,
ଶତାୟୁରେ ତୁମେ ଛରିଶ ବରଷେ
ପଠାଅ ସ୍ୱର୍ଗବାସ ।

ମଣିଷ ରକ୍ତ ଦେଖି ତ ଚମକ,
ମାଉଁସ ତା ବିକ ବିକ

ଗଢ଼ ଇମାରତ, ଦେଶପ୍ରେମ ବାଣ୍ଟି
ଠିକାଦାର ତୁମେ କାହିଁ ?

ମଣିଷ ମାରି ଯେ ଗୋସେବା ପ୍ରତି
ଅକାତରେ କର ଦାନ,
ନେତାଙ୍କ ଜୟନ୍ତୀ, ମେଳା, ଉତ୍ସବେ
କାମ କରେ ତମ ଧନ ।

ଦେଶର କଥା ଥାଉ ଅଟେକଇତ ଭାଇ
ଖୋଲା ଖୋଲି ମିଛେ ଗୋଇ
ଦଶେ ଦିଅଙ୍କର କାମ କରିଯିବା
ଉଲ୍ଲୁଏ ଥିବେତ ଶୋଇ ।*

---

* ଶ୍ରୀ ଅନ୍ନଦାଶଙ୍କର ରାଏ, ଆଇ. ସି. ଏସ୍. ଙ୍କର ଏକ ବଙ୍ଗଳା କବିତାର ଭାବ ଅବଲମ୍ବନରେ ଲିଖିତ ।

## ବିଦ୍ରୋହୀ କିରାନୀ

( ନଜରୁଲ ଢଙ୍ଗେ )

ବିଦ୍ରୋହୀ ମୁଁ ତ ବୀର······
ଶିର ଉନ୍ନତ ମୋର ଶିର ।
ଶିର ଦେଖି ମୋର ନତଶିର ହୁଏ ଏ ନଥି-ବାଲ୍ଗ୍ଲକର ।

ମୁଁ ତ ସାଇକ୍ଲୋନ୍, ମୁଁ ତ ଝଡ଼,
ମୁଁ ତ ନେକ୍‌ଟାଇ, ଜାମା ଯୋଡ଼ ।
ଢିଲା ପାଇଜାମା ମୁଁ ତ ଚିର,
ପୁଣି···) ସବୁ ସାଦା ସାଢ଼ୀ ଫର୍ ଫର୍ ।

ଶୃଙ୍ଖଳ ପାଶ ଚରଣେ ଦଳି ମୁଁ ଚଲୁ ଦେଇ ନାଲ୍ ଫିତା
ମୃତ୍ୟୁ-ଗହନ-ଗହ୍ୱରୁ ଆସିଛି ମୁକ୍ତ ଯେ ନାଚନ୍ତେ କେଉଁ ।

ମୁଁ ତ ମାନେ ନାଇ ବାଧା ବନ୍ଧ,
ବଡ଼ ସାହେବର ଭ୍ରୂକୁଟି-କୁଟିଳ ଭ୍ରୂକୁଟି ମୁହିଁ ଗନ୍ଧ ।
ଦଳି ଦେଇ ଶତ ଫାଇଲ୍,
ଆସିଛି ମୁଁ ଛୁଟି ଅଫିସ୍ ଖୋଡ଼ାରୁ ଦଉଡ଼ି ମାଇଲ୍, ମାଇଲ୍ ।

ମୁଁ ତ ଛଳ ଛଳ, ଚଂଚଳ·····
ମୁକ୍ତ ପବନେ ଧାନ ଶାଳିକାର ଯେଉଁପରି ନାଳ ଅଂଚଳ ।
ମହାପିସ ଖାନା ଦଲଲ ଦ୍ୱାର ଆସିଛି ଆଜ ମୁଁ ମୁକ୍ତ,
ଜାଗିଛରେ ଚିର ସୁପ୍ତ ।

ମୁଁ ତ ପ୍ରଳୟ, ମୁଁ ଭୂମିକମ୍ପ,
ନୁହେଁ ମୁଁ ତ ଖାଲି ଉପର ହାକିମ ହାତରେ ରବର ଷ୍ଟାମ୍ପ ।
ଚିର ଜାଗ୍ରତ କରାଣୀ ବୀର ମୁଁ ବଂଶଧର ଏକ ଚମ୍ପ ।

ମୁଁ ତ ନୂତନ ମାସର ପହିଲା ।
ପକେଟ୍ ଭରି ମୋ କେତେ କ କାଗଜ—ନୋଟ, ନାଲି ମୁଣି ଛଇଲା !
ଦୁଧବାଲା ବିଲ୍,        ହୋଟେଲ' ବାକି,
କେତେକ ପାଉଣା,     କାଟେ ଯାଏ ଡାକ ।
ଘଟରେ ପଶି ଶୁଣେ ଘଣ୍ଟିକାର ଶବ୍ଦ,     ନାଇ ପୁଣି ଜମା କୋଇଲା ।

ହୋଇଲା—
'ମୁଁ ତ ନୂତନ ମାସର ପହିଲା'
(ସ୍ୱଳ୍ପ ବେତନ ଶତ ପାଉଣାର ବାଣେ ମୋ' ଜଖମ ହୋଇଲା ! )

ମୁଁ ତ ବିଦ୍ରୋହୀ,          ମୁଁ ତ ବୀର,
ମୁଁ ତ ଫୁଲସ୍କୁଲ୍,          ଖେଳଓ୍ୱାଡ଼ ।
ଶେଠରିକଟା ଏକ କରାଣୀ ପ୍ରାଣୀ ମୁଁ ଧରଣୀର ଗୁରୁଭାର,
ମୁଁ ତ ବିଦ୍ରୋହୀ ରଣବୀର ।

———

# ପାର୍ଟି ବିଭ୍ରାଟ

**କର୍ମନଷ୍ଟି**

କର୍ମନଷ୍ଟି ଦଲେ ଯେଧନ  ଲେଖାଇଲି ମୁଁ ନାଆଁ
ବୁଲାଇଦେଲି ସାରା ଦେଶକୁ  ପଠାଏ ମୁଁ ଯେ ଭୂଆଁ ।
ପୁରୁଣା ଆଉ ପୋଖତ ଯେତେ  ଥିଲେ ଦଳର ସାଥୀ
ପଦ୍ମଲେ ହେଇମାନଙ୍କୁ ତଡ଼ି  ଜାଳିଲି ନାଲିବତୀ ।
ଯା କିଛି ହେଲା ଅସଳ,  ଯାହା ହୋଇଲା ଅଡ଼ୁଆ—
କରିଲିଁ ପାର୍ଟି ମିଳି ପଂଖାଏ  ଛାକା କଲେଜ ଛୁଆ—
—"ବୁର୍ଜୁଆ,, ବୁର୍ଜୁଆ !"

ପ୍ରାଚୀନ ଯେତେ ଶିଳ୍ପ, କଳା,  ପୁରୁଣା କଳାକର,
ପରଂପରା, ସବୁକୁ କରି  ଥୁ-ଥୁ, ଛି-ଛିକାର
ନୂଆ ଯୁଗର ଶୁକ୍ରତାରା  ଉଠିଲୁଁ ଆମେ ଜଳି
କଲେଜ ଛକ ଆଲୁଅ କରି  ଉଭରି ବତୀ ପରି ।
ମାର୍କସ୍‌ବାଦ୍ 'ମକାର' ଅଡ଼ୁ  କରିଲୁଁ ଅଧ୍ୟୟନ,
ମାର୍କସ୍ ବାଦେ ବାଦଂଠା ହେଲା  ଆମର ମଂତ୍ର, ଧ୍ୟାନ !
ରୁଷୀୟ ମତେ ଛିଁକଲୁଁ ଆମେ  କାଟିଲୁଁ ନାଲି କାଣ
ସହର ସାରା ଦେଖାଇ ଦେଲୁଁ  ନୂଆ ଶାରଦ ରାସ ।
ସିଗାର୍ ଖାଇ ଉଡ଼ାଇ ଦେଲୁଁ  ରଙ୍ଗୀନ୍ ନାଲ୍ ଧୂଆଁ
ଦେଶଟା ଯାକ ବୁଲାଇ ଦେଲୁଁ  ପଠାଏ ଆମ୍ଭ ଭୂଆଁ ।
ଯା କିଛି ପଡ଼େ ସାମନା ପନ୍ଥ  ଯା କିଛି ଦେଖେ ଆଖି
ଗାଡ଼ି ରୁପାଟେରେ ମଲା କୁକୁର—  'କହେ ସଭିଙ୍କି ଡାକି—

ଦାୟୀ ଏ ଲାଗି ଅଟ୍ଟର କଏ ? ନେହରୁ ସରକାର !
ଉଆଡ଼ଅଣ୍ଟ ଏ-ସବୁ କାଣ୍ଡ, ଧ୍ୱଂସ ହେଉ ତାର ।
ଧରାରେ ଯଦି ସ୍ୱର୍ଗ ଥାଏ ମସ୍କୋ ଦେଶ ଅସି;
ଏକ ସାଥୀର କନ୍ୟା ନାମ ଲେନିନବାଳା ଦାସୀ—
ରଖିଲ୍ ତାର ନାମକରଣେ, ମୌଳିକତା କାଢ଼ି,
ସେଦିନୁ ହେଲା ପାର୍ଟିରେ ନାଆଁ, ପାହୁଅ ଗଲା ବଢ଼ି ।
(ଆମେ) ନୂଆ ଯୁଗର ପୁରୁଷ, ନାସ୍ତି ବନ୍ଧାପଣର ନାତି,
ଆମର୍ କୋଠ-ନାମଟା ଅଟେ କର୍ମନଷ୍ଟି ପାର୍ଟି ।
ଦେଶରେ ଯେତେ ଆତଂକବାଦ ଲାଇନ୍ ଘଡ଼ା କାମ,
ଟ୍ରାମ୍ ପୋଡ଼ା, ବାସ୍ ଜଳା ଆଦ ଯେତେକ ବାମ—
ପଥର ସୂଚୀ, ଥାନା ଉପରେ ଚଢ଼ାଉ ଆଦ ନେଇ—
ଆମର ଦ୍ୱାରା ଭୌତିକ ସେ କାଣ୍ଡ ଥାଏ ହୋଇ ।
ସବୁ କଥାରେ ପରକୁ ଦୋଷି ପଣସ ଖାଇ ଅଠା—
ପର ମୁଣ୍ଡରେ ବୋଳିବା ଆମ ପାର୍ଟିର ନୀଯୁମଟା ।
ସବୁ କଥାରେ ଅଗୁଆ ଆମେ ସବୁ କଥାରେ ଷଣ୍ଢ,
ଆମ ନାଆଁରେ ବସ୍ତୁ ସାର ହୁଅଇ ଲଣ୍ଡ ଭଣ୍ଡ ।
କେବେ ଥାଉଁ ଏ ପୃଥିବୀ ପରେ, କେବେ ବା ମାଟି ତଳେ
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳେ ରହୁଁ, ଧର ଏ ତନପୁରେ ।
ଆମ ନାଆଁଟି ପାରିବ କହି ? ପାରିବ କହି ସାଥୀ ?
ଆମର କୋଠ-ନାମଟା ଅଟେ କର୍ମନଷ୍ଟି ପାର୍ଟି ।

## କଂଗ୍ରେସୀ

ଅଣ୍ଟ୍ ଏ ଲଂବ ଖଦୀ କନାରେ ଆବୃତ ଯେ ତନୁ,
ଚକ୍‌କଣିଆ କ୍ଷୌର-ପୂତ ଏଇ ଯେ ବେନ ହନୁ,

ଶ୍ଳେଷ ଏକ  ଖଦ୍ଦାକାର  ମଣିଷଟି ମେ ଦେଖ—
ପରିଧି ତାର  ପାରିବ କଳି ?  ଜାଣ ତା ରୂପରେଖ ?
ଗାଁ ମୁଣ୍ଡରୁ  ଆରମ୍ଭ କରି  ଲ'ଠ ସଭା ଯାଏ
ସର୍ବବ୍ୟାପୀ  ମଶକ ପରି,  ସବୁଆଡ଼େ ସେ ଥାଏ
ଦେଶ ସେବାଷ୍ଠା  ମୌରସୀ ତା,  ଲାଗିଲେ ଟିକେ ଆଁଚ
କହିବ ସିଏ  ହଲାଇ ହାତ  ଲଗାଇ ସାତ ପାଁଚ—
ତା' ଛଡ଼ା ଯେତେ  ରହିଲେ, ସବୁ  କର୍ମନଷ୍ଟି ଦଳ;
ଦେଶ ପ୍ରେମଷ୍ଠା  ତାହାରି ଠିକା,  ତାହାରି କେବଳ !
ଶ୍ୱେଠ ରଙ୍ଗ  ଲୀଳାର ସେତ  ନାୟକ ବୀରବର,
ଆଗାମୀ ପାଞ୍ଚ  ବର୍ଷ ପାଇଁ  ଦେଶର ଠିକାଦାର—
ହେବାକୁ ମନ,  ବଡ଼ ଉଚ୍ଛୁଳ  ଶୀର୍ଣ୍ଣ ବଟବପୁ ।
ସବୁ କଥାରେ  ଗାନ୍ଧି ନାମ,  କଥା କଥାକେ 'ବାପୁ' !

## ସାମ୍ୟବାଦୀ

'ଆମେ ସାମ୍ୟବାଦୀ
ଆମେ ଲାଲ୍ ଲାଲ୍
ଆମେ ବର୍ତ୍ତୁଳ,
ଆମେ ଗୋଲ ଗାଲ୍ ।

ଆମେ ଗଢ଼ ଯାଉଁ  ଏଠେଣି ସେଠେଣି କେବଟେ
ଯେଉଁପରି ଏକ ଫୁଟ୍‌ବଲ୍ ।
ଆମେ ଏକ ନୂଆ ଉପଗ୍ରହ,
ଆମେ ବିଦ୍ରୋହ, ଚିର ବିଦ୍ରୋହ !!
କଂଗରେସ୍ ପରେ  ଆମରଇ ପାଳି
ଜୟ, ଜୟ, ଆମ ଜୟ, ଜୟ ।

ଆମକୁ ପାରୁ ନ ଚିହ୍ନି ?
ଆମେ ପଗ୍ର ମିନା ମିନ ।
କା'ଲ୍... ଆମେଇ ଅସିବୁ ଧାଇଁ,
ଯେତେ ଆମେ ଝୁଅଁ ଝୁଇଁ ।
କଂଗ୍ରେସ୍ ପରେ ଏ ମହାଦେଶର
ମୌରସୀଦାର ପଛା
ଆମେଇ ନେଇଛୁଁ ବିଶ୍ୱାସ କର
ମିଛ ନୁହେ, ନୁହେ ଥଛା !!

## କ୍ଷତ୍ରିୟ୍-ଖଣ୍ଡାୟତ

ଆମେ କ୍ଷତ୍ରିୟ୍ ବୀରବର
ଜୟ୍ ଜୟ୍ ଜୟ୍କାର ।
ଆମେ ଗଜପତି କାତି ଚମ୍ପତି
ଦକ୍ଷିଣି କବାଟ-ପାଲ ।
ଆମେ କ୍ଷତ୍ରିୟ୍ ରଣବୀର ।

ଆମେ ଖଣ୍ଡାୟତ ଜାତି
ଆମେ ପୋଷା ପାଠ ହାତୀ ।
ଆମେ ରଜାଙ୍କର ଗହଣିଆ ଲୋକ
ଟେକ ଧରେ ଥାଉଁ ଛତି ।

ଆମକୁ ଦିଅ ହେ ଭୋଟ,
ସବୁ କରି ଦେବୁଁ ଚଉପଟ ।
ଗଜପତି ଯୁଗ ଫେରାଇ ଆଣିବୁଁ
କୋଟି, ଭେଟି, ମୁଣ୍ଡ କାଟ ।

**ସ୍ୱଗତଃ**

ଦେଖି ଏଇ ସବୁ ନାଟ
ଦଳ—ଦଳ ବିଭ୍ରାନ୍ତି ।
ମନେ ମନେ ଭାବେ ସ୍ୱାଧୀନ ଭାରତ: ନାଗରିକ
କାହିଁ ବାଟ ?
ଭାବି ଭାବି ହେଲି ଅସ୍ଥିର,"
ଗୋଟାଏ ମଣିଷ କରି ମୋତେ ଗଢ଼ି
ଭୁଲ କଲେ ଭାରି ଈଶ୍ୱର ।
ଯଦି…ହୋଇଥାନ୍ତି ଶୂର ଜଣ
ଶୂର ଦଳେ ହୋଇ ବାଣ୍ଟି ମୁଁ ଏ ଦେଶ
ଭୋଗୁଥାନ୍ତି ଆମରଣ ।
ଶେଷେ……ଦିଶିଗଲା ଏକ ବାଟ,
ଛୁଡ଼ିଗଲା ସବୁ ଲାଟ ।
ନିଜ ବୁଦ୍ଧିଟାକୁ ବଂଧଇ ଦେଇ ମୁଁ
ସୁରୁ କଲି ହରିହାଟ ।
ନିଜେ ତିରଙ୍ଗା ଧ୍ୱଜା ଧରି
ଧରିଅଡ଼େ ଦେଲି ସାମ୍ୟବାଦର
ଲଂଗଳ ଦାଆ ଠେଲି ।
ଚାଲିବନ୍ତି ଏକ ଏକ
ଅନ୍ୟ ଦଳରେ ବାଣ୍ଟି ଦେଇ ଭାବେ
ଏଇଥର ମଜା ଦେଖ ।
ଆସିବ ଆସୁ ଯେ ଦଳ—
ପରବାଏ ନେଦୁ, ଆମରି ଘରେ ତ ରହିବ
ଶାସନ-କଳ ! !

---

# ଓଣତିରିଶ ବର୍ଷ ତଳେ

(୧)

ଆଜ.........

ଏ ଦେଶର ମାଟି ଶୀତଳ କଅଁରେ
ଏ ଦେଶ ପବନ ଥଣ୍ଡା ?
ଏ ଦେଶ ବଣରେ ନାଇ ଫୁଲ, ଫଳ
ତରୁ ଲତା ସବୁ ନଣ୍ଡା !
ଲୁଦଲା ବେଲକୁ ଏ ଦେଶର ମାଟି
କୋଲ୍ ମାର ହୃଦେ ଖଜ ବାଜେ ପାଟି ।
ସନ୍ନିପାତ ରୋଗୀ ପର ଦେଶବାସୀ
ଯହିଁ ଦେଖେ ଗଣ୍ଡା ଗଣ୍ଡା ।
ଏ ଦେଶ ପବନ ଥଣ୍ଡା ।

(୨)

ଘୋର ପଞ୍ଜର ଘନ ଶୀତ ଜାଡ଼େ
କାକର ଲାଗୁଛ ପଦ,
ଗୃଲ୍‌ଲା ବେଲକୁ ଏ ପଥ ଧୂଳରେ
ପଡ଼ିଛ କ ବରଫ ହ୍ରଦ ! !
ଏ ଦେଶ ଯୁଆନ, ଏ ଦେଶର ଭେଣ୍ଡା
ଫିମି-ମରା-ଜୁଆ ଧାନ ପେଣ୍ଡା ପେଣ୍ଡା,

କାହିଁ ଶାବଳଆ ଖାର ଘୃତ ତାର
କାହିଁ ତା ଦହଳି ଷଣ୍ଢ ?
ଏ ନଦୀ ପବନ ଥଣ୍ଡା ।

(୩)

ଛନାଶ ବରଷ ତଳେ ଏ ଦେଶରେ
ଦିନେ ମୁଁ ଥିଲି ତ ଗୃହୀ,
ଗରମ ଥିଲା ଏ ଦେଶ ଚେଜକତ
ଯେମିତ ତତଲା ବାଲି ।
ଗୃହୀଙ୍କ ଦେହକୁ ଫୁଟୁଥିଲା ଖାଇ,
ହାସ ହସ ମୁହେଁ ନାହିଁଆ ନାଇ,
ଦେଶର ମୁଆନ ଭୀମ, ମୁଷକାଆ
ଖାଇ ଭାତ, ଖିର, ମଣ୍ଡା ।
ଆଜ ସେଇ ଦେଶ ଥଣ୍ଡା !

(୪)

ସେଦିନ ଯେବେ ମୁଁ ଆସିଥିଲି ଏଇ
ବକ୍ସି, ପାଇକ ଦେଶେ
କେତେ ଚମୂପତ, ରାଉତ, ନାୟକ
ଦେଖିଥିଲି ବୀର ବେଶେ ।

କଳା ଦେହେ ତାଙ୍କ ହଳଦୀ ଗାର
ଚକଣ ଘୃତର ଥିଲା ବାଘ ଗ୍ଳାଲ ।

ହାତେ ହାତେ ଖୋଲ୍ଲ          ଢ଼ାଲ, ତରଓ୍ୱାଲ,
କଟିରେ ଥିଲ୍ଲ ତ ଖଣ୍ଡା ।।
ସେ ଦେଶ ଅଙ୍କ ତ ଥଣ୍ଡା !

(୪)

ଏ ଦେଶର ରଜା          ଥିଲେ ଗଜପତି
ଏ ଯେ ଗଜପତି ଜାତି,
ଗଡ଼ ପହ୍ୱରୀରେ          ମଶାଲ ହାତରେ
ଜଗୁଥିଲ ଦନ ରାତି ।
ସ୍ନାହାନ ସକାଳେ          ବଜେ କଲେ କେମା
ଦରପଣ ବାଡ଼          ପଡ଼ୁଥିଲ୍ଲ ଏ ମା !

ହଳାରେ ଦାସିଏ          ଗୁଲୁଥିଲେ ଆଗେ
ମିଳାଇ ହାତରେ କଣ୍ଡା !
ସେ ଦେଶ ଅଙ୍କରେ ଥଣ୍ଡା ।

(୬)

ସୁନଅ ଦନରେ          ଯେବେ ଦେଉଳକୁ
ବଜେ ହେଉଥିଲେ ରାଣୀ
ସୁନା ସବାରରେ          ଆଲଟ, ଗ୍ଭମର,
କନକ ଗୁଡୁଆ ଠାଣି,
ଶତେକ ମୁଣ୍ଡ ହାଣ୍ଡି          ସଜାଇ ପାହୁଲ,
ସୁନା ଦଣ୍ଡ ଧରି          ଗୁଟଲ,ଆଗଭର

ଆଗେ ଯାଉଥିଲେ ପାଞ୍ଚ ଯୋଷୀ ପୁଅ
ହାତେ ଧରି ପୂଜା ଧଣ୍ଡା ।
ଆଜିରେ ସେ ଦେଶ ଥଣ୍ଡା ।

(୮)

ପୂଜା ପରବରେ ପୁନିଅ ଛଥିରେ
ଝଲ୍ଲକୁଥିଲା ଏ ଦେଶ,
ପାଞ୍ଚ ଯୋଷଢ଼ାରେ ମୂଲିଆ ବାପୁଡ଼ା
ଦେଖୁଥିଲା ବରବେଶ ।
ସର ଲହୁଣୀରେ ଗୁଲୁଥିଲେ ବାଟ,
ଏ ଦେଶ ମହିମା ଗାଉଥିଲା ଭାଟ ।

ବୋଇତ ଡାହାର ଆଣୁଥିଲା ବୋହି
ହୀରା, ନୀଳା ହଣ୍ଡା ହଣ୍ଡା ।
ସେ ଦେଶ ଆଜି ତ ଥଣ୍ଡା ।

(୮)

ଦେଶର ସାଧବ ବରିଆ ପାଟରୁ
ସୁନା ପାଲ ଦେଇ ଟେକ
ତୋଳି ଆଣୁଥିଲା ମାଣିକ ଫୁଲ ଗୋ
ଦେଖି ତ ନା ଧିପ ଆଖି ।

ଧନ ଦଉଲତେ ସବୁ ଗନ୍ତାଘରେ
ଟପାଉ ଥୋଇଥିଲା, ମୁଦା ସେ ଦୁଆର

ଭୋକ ବକଲରେ                    ଅଳ୍ପ କାଲି ପରି
ଶୁଖୁଥିବା ନ ଥିଲା ଦଣ୍ଡା ।
ସେ ଦେଶ କଥାଁରେ ଥଣ୍ଡା ।

(୯)

ଦେଶର ସୁଜନ                    ମଣ୍ଡଳମଣି ସେ
ହେଲା ଦେଲେ ଦହଲାଗି
ସୁନା ମାଟିଆରେ                    ଶହେ ଗର୍ଭ ପାଣି
ନାଇ ହେଉଥିଲା ଲାଗି ।

ଭୂଆସ ଅଗଣା                    ଭରୁଥିଲା ପୂରି
ଦରବାର ବେଳେ                    ପଡ଼ୁଥିଲା ଦ୍ୱାର ।

ରଜାଙ୍କ ଗହଣେ                    ଶହେ ପରିଜନ
ପଡ଼ୁଥିଲେ ଲମ୍ବଦଣ୍ଡା ।
ସେ ଦେଶ ତ ଅଳ୍ପ ଥଣ୍ଡା !!

(୧୦)

ଏ ଦେଶ ଜିଣିବା                    ଲାଗି କେତେ ଦୂରୁ
ନ ଅସିଲେ କେତେ ବୀର,
ଆମ ବାପ, ଅଜା                    ଖଣ୍ଡା ମୁନେ କରେ
ରହିଲା ତାଙ୍କ ଶିର ?

ବନ୍ଧୁ ପହୁଆର                    ବାଟେ ଜାଉ ଗୁଡ଼ି
ଗୁଳିଥିଲେ ସେ ତ,                    ବରୁଣୋଇ ଘାଟି

ପ୍ରତିଧ୍ୱନି ଛଳେ ପଡ଼ୁଥିଲା ଫାଟି;
(ସେ ଯେ) ମୁକତି ଦେବୀଙ୍କ ପଣ୍ଡା ।
ସେ ଦେଶ କାହିଁରେ ଥଣ୍ଡା ?

(୧୧)

ଦୁନିଆର ତଳେ ଏ ଦେଶ ଯେ ଥିଲା
ସବୁରି ଦେଶର ହୀରା,
ସେ ଦିନ ଏ ଦେଶ ନାମ ଉଚ୍ଚରିଲେ
ନାଚି ଉଠୁଥିଲା ଶିରା ।
ସେଦିନ ଏ ଦେଶ ଗୋଡ଼ ପଥରରେ
ଜୟ "ଖଣ୍ଡେଶ୍ୱରୀ" ଖେଳୁଥିଲା ସ୍ୱରରେ ।
ସାରା ଦୁନିଆର ଗୋଲବସର ସେ
ଉଡ଼ୁଥିଲା ଜୟ ଝଣ୍ଡା ।
( ହାୟ ! ) ଆଜ ସେଇ ଦେଶ ଥଣ୍ଡା । *

———

* ଉତ୍କଳ—ଭାଦ୍ର ୧୩୪୨ ସଂଖ୍ୟାରେ ପ୍ରକାଶିତ ।